ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ସମ୍ପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ମାସିକ ସାହିତ୍ୟ ଇ-ପତ୍ରିକା

# ଆହ୍ୱାନ

ଜୁନ୍ ୨୦୧୭ ସଂସ୍କରଣ



ପବିତ୍ର ରଜପର୍ବ ଏବଂ ରଥଯାତ୍ରା
ପାଇଁ ସମସ୍ତ ଓଡ଼ିଆ ଭାଇଭଉଣୀଙ୍କୁ
ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ।








# ଆହ୍ୱାନ

ଓଡ଼ିଶାର ପ୍ରଥମ ଏବଂ ଏକମାତ୍ର ମାସିକ ସାହିତ୍ୟ ଇ-ପତ୍ରିକା

ପ୍ରତିଷ୍ଠାତା - ସମ୍ପାଦକ

## ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍., ପି.ଜି.ଡ଼ି.ଏମ୍.ସି.ଏଚ୍., ପି.ଜି.ଡ଼ି.ଏଚ୍.ଏମ୍.

ବୀମା ନଗର, ଦ୍ୱିତୀୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଦୂରଭାଷ - ୯୦୪୦୯୮୫୪୬୩, ଇମେଲ୍ - aahwaan@gmail.com






'ଆହ୍ୱାନ'ରେ ପୂର୍ଣ୍ଣତଃ ମୌଳିକ, ଅପ୍ରକାଶିତ ଲେଖା ଗୁଡ଼ିକୁ ହିଁ ଲେଖାର ମାନ ଏବଂ ଭାଷା ତଥା ଉପାଦେୟତା ଆଧାରରେ ଚୟନ କରାଯାଇଥାଏ । କୌଣସି ବେନାମୀ ଲେଖା ଉପରେ ଆମର କୌଣସି କର୍ତ୍ତବ୍ୟ / ଦାୟିତ୍ୱ ରହିବ ନାହିଁ, ଯେତେବେଳ ଯାଏଁ କୌଣସି ସୂଚନା ବା ନିର୍ଦ୍ଦେଶ ଦିଆଯାଇନାହିଁ । ଲେଖାରେ ଦିଆଯାଇଥିବା ବିଚାର ଲେଖକଙ୍କର ସମ୍ପୂର୍ଣ୍ଣ ନିଜସ୍ୱ, ତାହା ଉପରେ ସମ୍ପାଦକ କିମ୍ବା ପ୍ରକାଶକଙ୍କ ସହମତି ରହିବ ବୋଲି କୌଣସି ଲିଖିତ ନିୟମ ନାହିଁ । ଯଦିଓ ସମ୍ପାଦକ ସବୁ ଲେଖାକୁ ଭଲ ଭାବରେ ପଢ଼ନ୍ତି ଏବଂ ବୁଝିବା ପରେ ହିଁ ପ୍ରକାଶିତ କରିଥାନ୍ତି । ତଥାପି ଲେଖାର ଶତପ୍ରତିଶତ ସତ୍ୟତାର ଦାବୀ କେବଳ ଲେଖକଙ୍କର । କୌଣସି ଲେଖାକୁ ନେଇ ଉଠିଥିବା ବିବାଦର ଉତ୍ତରଦାୟିତ୍ୱ କେବଳ ଲେଖାର ମୂଳ ଲେଖକଙ୍କର, ଏଥିରେ ସମ୍ପାଦକ କିମ୍ବା ପତ୍ରିକାର କୌଣସି ଉତ୍ତରଦାୟିତ୍ୱ ରହିବ ନାହିଁ ।

ଏହି ପତ୍ରିକାର କୌଣସି ଅଂଶ ବା ଲେଖା ସମ୍ପାଦକଙ୍କ ଲିଖିତ ଅନୁମତି ବିନା ଅନ୍ୟ କୌଣସି ମାଧ୍ୟମ (ପତ୍ର ପତ୍ରିକା / ଗଣମାଧ୍ୟମ / ସମ୍ବାଦପତ୍ର ଇତ୍ୟାଦି)ରେ ପ୍ରକାଶିତ କରିବା ଏକ ଅପରାଧ । ଦୟାକରି ଏହି ବିଷୟ ପ୍ରତି ବିଶେଷଧ୍ୟାନ ଦେବେ । ଲେଖକମାନେ ଚାହିଁଲେ ନିଜ ଲେଖାର ପ୍ରସାର ଓ ପ୍ରଚାର ହେତୁ ସେମାନଙ୍କ ଲେଖା ପ୍ରକାଶିତ ହୋଇଥିବା ପୃଷ୍ଠାମାନଙ୍କର ପ୍ରତିଛବି ଗଣମାଧ୍ୟମ ବା ଇଣ୍ଟରନେଟରେ ଦେଇପାରିବେ । ଏଠାରେ ଆମେ ଅନୁରୋଧ କରିବୁ ଯେ ଯେବେ ମଧ୍ୟ ଆପଣ ପତ୍ରିକାର କୌଣସି ଅଂଶ ଇଣ୍ଟରେନେଟ / ଫେସବୁକ / ଟ୍ୱିଟରରେ ପ୍ରସାର କରୁଛନ୍ତି, ଦୟାକରି ଆମ ପତ୍ରିକାର ୱେବ୍‌ସାଇଟର ନାଁ (www.aahwaan.com) ଉଲ୍ଲେଖ କରିବାକୁ ଭୁଲିବେ ନାହିଁ ।






ଆହ୍ୱାନ ଇ-ପତ୍ରିକାର ଆଣ୍ଡ୍ରଏଡ୍ ମୋବାଇଲ୍ ଆପ୍ ଡାଉନଲୋଡ଼ କରନ୍ତୁ ।

ନିମ୍ନରେ ଦିଆଯାଇଥିବା ଲିଙ୍କ ଉପରେ କ୍ଲିକ୍ କରନ୍ତୁ, କିମ୍ବା ଉପରେ ଦିଆଯାଇଥିବା କ୍ୟୁଆର୍ କୋଡ୍‌କୁ ସ୍କାନ କରନ୍ତୁ ।

ଧନ୍ୟବାଦ

**http://www.appsgeyser.com/4368717**






# ସୂଚୀପତ୍ର


http://www.appsgeyser.com/4368717


http://www.appsgeyser.com/4368717


http://www.appsgeyser.com/4368717


http://www.appsgeyser.com/4368717






ଓଡ଼ିଆଗୁରୁ ଓଡ଼ିଆ ବ୍ଲଗ୍ ଆଣ୍ଡ୍ରଏଡ୍ ମୋବାଇଲ୍ ଆପ୍ ଡାଉନଲୋଡ଼ କରନ୍ତୁ ।

ନିମ୍ନରେ ଦିଆଯାଇଥିବା ଲିଙ୍କ ଉପରେ କ୍ଲିକ୍ କରନ୍ତୁ, କିମ୍ବା ଉପରେ ଦିଆଯାଇଥିବା କ୍ୟୁଆର୍ କୋଡ୍‌କୁ ସ୍କାନ କରନ୍ତୁ ।

ଧନ୍ୟବାଦ

**http://www.appsgeyser.com/4251312**






# ସମ୍ପାଦକଙ୍କ ଲେଖନୀରୁ



ନମସ୍କାର

ଆହ୍ୱାନ ଇ-ପତ୍ରିକା ପଢୁଥିବା ଏବଂ ଏହାର ପ୍ରସାର ଦିଗରେ ସହଯୋଗ କରିବାପାଇଁ ଆଗେଇ ଆସିଥିବା ସମସ୍ତ ବନ୍ଧୁଙ୍କୁ ଯଥାମାନ୍ୟ ସମ୍ମାନ ଜଣାଇ ଉପସ୍ଥାପନ କରୁଛି ଜୁନ୍ ମାସର ଆହ୍ୱାନ ଇ-ପତ୍ରିକା । ଆଶା କରୁଛି ବିଗତ ସମସ୍ତ ସଂସ୍କରଣ ପରି ଚଳିତ ସଂସ୍କରଣ ମଧ୍ୟ ଆପଣ ମାନଙ୍କୁ ଅମୋଦିତ କରିବ । ଚଳିତ ସଂସ୍କରଣରେ ଉପସ୍ଥାପିତ ଅନେକ ଗଳ୍ପ ଓ କବିତା ବାସ୍ତବିକ ମର୍ମସ୍ପର୍ଶୀ ହୋଇଛି ବୋଲି ମନେ ହୁଏ । ଯେଉଁ ବନ୍ଧୁମାନେ ବର୍ତ୍ତମାନ ସୁଦ୍ଧା ନିଜ ଦ୍ୱାରା ଲିଖିତ କୌଣସି ଗଳ୍ପ ବା କବିତା ଆମ ନିକଟକୁ ପଠାଇନାହାନ୍ତି ସେମାନଙ୍କୁ ଅନୁରୋଧ ସେମାନେ ଏବେଠାରୁ ଚେଷ୍ଟା କରନ୍ତୁ । ନିଶ୍ଚୟ ଆପଣମାନେ ସଫଳ ହେବେ, ଆମ ଭାଷା ସାହିତ୍ୟର ଉନ୍ନତି ଓ ପ୍ରସାର ହେତୁ ଆପଣଙ୍କ ଅବଦାନ ନିଶ୍ଚୟ ସଫଳ ହେବ ।

### ଭାରତ ପାକିସ୍ତାନମଧ୍ୟରେ ଛକାପଞ୍ଝା

ବିଗତ ଦିନରେ ଦକ୍ଷିଣ ଏସିଆର ଏହି ଦୁଇ ପଡ଼ୋଶୀ ରାଷ୍ଟ୍ରମଧ୍ୟରେ ଥିବା ଶତୃତା ଏକ ନୂତନ ଦିଗନ୍ତ ନେଇଛି । ଭାରତୀୟ ନାଗରିକ କୁଳଭୂଷଣ ଯାଦବଙ୍କୁ ଗିରଫ କରି ସେ ଭାରତର ଗୁପ୍ତଚର କହି ତାଙ୍କୁ ମୃତ୍ୟୁଦଣ୍ଡ ଆଦେଶ ଦେଇ ପାକିସ୍ତାନ ଖବରରେ ରହିଥିଲା, ଭାରତ ସରକାର ତ୍ୱରିତ ପଦକ୍ଷେପନେଇ ଏହା ବିରୋଧରେ ଅନ୍ତରାଷ୍ଟ୍ରୀୟ ଅଦାଲତରେ ମାମଲା ଦାୟର କରିବାପରେ ଭାରତ ତରଫରୁ ଏହି ମାମଲାକୁ ଉପସ୍ଥାପନ କରୁଥିବା ଆଇନଜୀବିଙ୍କ ଯୁକ୍ତିରେ ଅଦାଲତ






ସନ୍ତୁଷ୍ଟ ହୋଇ ପାକିସ୍ତାନକୁ କୌଣସି ପ୍ରକାର ପଦକ୍ଷେପ ନେବାରୁ କ୍ଷାନ୍ତ ରହିବା ପାଇଁ ନିର୍ଦ୍ଦେଶ ଦେଇଥିଲେ ।

କିନ୍ତୁ ସୀମାରେ ଏହି ଦେଶ ନିଜର କୁନୀତିରୁ କ୍ଷାନ୍ତ ଆସିବା ପରି ମନେ ହୁଏ ନାହିଁ । ପ୍ରତିଦିନ କିଛି କିଛି ଆତଙ୍କବାଦୀଙ୍କୁ ସେଇ ଦେଶ ଭାରତସୀମା ଡେଇଁ ଭିତରକୁ ପଠାଇବାକୁ ଚେଷ୍ଟା ଜାରୀ ରଖିଛି । ଅବଶ୍ୟ ଆମେରିକାର ଟ୍ରମ୍ପ ପ୍ରଶାସନ ପାକିସ୍ତାନକୁ ଦିଆଯାଉଥିବା ସହାୟତା ରାଶିକୁ ଋଣ ଭାବରେ ଦିଆଯିବ ବୋଲି ଘୋଷଣା କରିବାପରେ ପାକିସ୍ତାନ ଦୁନିଆ ଆଗରେ ନିଜର ସମ୍ମାନ ବଞ୍ଚାଇବାପାଇଁ ଦେଶରେ କାମ କରୁଥିବା ଅନେକ ଆତଙ୍କବାଦୀ ସଂଗଠନର ବ୍ୟାଙ୍କଖାତା ସିଲ୍ କରିଛି । ଏହିପରି ଅନେକ ଥର ହୋଇଛି ତେଣୁ ପାକିସ୍ତାନ ଏଥର ବି ଗମ୍ଭୀର ଥିବା କଥା ସଠିକ୍ ଭାବରେ କହି ହେବନାହିଁ । ଭାରତର ମୁଖ୍ୟ ଶତ୍ରୁ ପାକିସ୍ତାନର ଜମାଦ-ଉଦ୍-ଦାଵାର ପ୍ରମୁଖ ମସୁଦ୍ ଆଜ୍‌ହରକୁ ଗୃହବନ୍ଦୀ କରି ରଖିବା ଖବର ମିଳିଛି ।

ଜମ୍ମୁକାଶ୍ମୀରରେ କିନ୍ତୁ ଅଶାନ୍ତି ସୃଷ୍ଟି କରିବାକୁ କୌଣସି ମସୁଧା ପାକିସ୍ତାନ ଛାଡ଼ିନାହିଁ । ପାକିସ୍ତାନର ପ୍ରତ୍ୟକ୍ଷ ଏବଂ ପରୋକ୍ଷ ପ୍ରରୋଚନାରେ ପଡ଼ି ଅନେକ ଯୁବକ ଯୁବତୀ ଆମ ସୁରକ୍ଷାବଳଙ୍କ ଉପରେ ପଥର ଫୋପାଡିବା ପରି କାମରେ ନିଯୁକ୍ତ ହେଉଛନ୍ତି । ସଦ୍ୟପ୍ରାପ୍ତ ଖବର ଅନୁଯାୟୀ କାଶ୍ମୀର ଘାଟିରେ ପୁଣିଥରେ ଆତଙ୍କବାଦକୁ ପ୍ରୋତ୍ସାହନ ଦେବାପାଇଁ ହିଜବୁଲ୍ ମୁଜାହିଦ୍ଦିନ୍ ସକ୍ରିୟ ହୋଇଛି । ଏହାର ପୋଷ୍ଟରବୟ ବୁର୍‌ହାନ୍ ୱାନିକୁ ହତ୍ୟା କରାଯିବାପରେ କାଶ୍ମୀର ଶାନ୍ତ ପରିବେଶ ଦେଖାଯାଇ ନଥିବା ବେଳେ ସଂଗଠନର ନୂଆ କର୍ମକର୍ତ୍ତାଙ୍କ ଫଟୋ ସୋସିଆଲ୍ ମିଡ଼ିଆରେ ଦେଖାଯାଉଛି । ଖୁସିର କଥା ସୋସିଆଲ୍ ମିଡ଼ିଆରେ ପ୍ରସାରିତ ଫଟୋରେ ଦେଖାଯାଇଥିବା ବାରଜଣ ଆତଙ୍କବାଦୀଙ୍କ ମଧ୍ୟରୁ ଆଠ ଜଣଙ୍କୁ ଆମ ସୁରକ୍ଷାବଳ ନିହତ କରି ସାରିଲେଣି । କାଶ୍ମୀର ଶାନ୍ତି ଆଣିବାପାଇଁ






ସମସ୍ତ ପ୍ରକାର ପ୍ରୟାସ ଚାଲିଛି, ଆଉ ଆଶା କରାଯାଉଛି ଖୁବ୍ ଶୀଘ୍ର ଏ ଦିଗରେ କେନ୍ଦ୍ର ସରକାର କୌଣସି ପଦକ୍ଷେପ ନେବେ । ଅବଶ୍ୟ ଘାଟିରେ ଚାଲୁଥିବା ହିଂସାକାଣ୍ଡକୁ ପ୍ରତିହତ କରିବାପାଇଁ ସୁରକ୍ଷାବଳଙ୍କୁ ସ୍ୱାଧୀନତା ଦିଆଯାଇଛି ବୋଲି ସୁରକ୍ଷାମନ୍ତ୍ରୀ ଶ୍ରୀ ଅରୁଣ ଜେଟଲି ସୂଚନା ଦେଇଛନ୍ତି ।

ସବୁ ମଧ୍ୟରେ ଆମ ଦେଶର କିଛି ନାଗରିକ ହିଁ ପରୋକ୍ଷରେ ଘାଟିରେ ଚାଲିଥିବା କାର୍ଯ୍ୟକଳାପକୁ ସମର୍ଥନ ଜଣାଇ ସରକାରଙ୍କ ବିଭିନ୍ନ ପଦକ୍ଷେପକୁ ନିନ୍ଦା କରିବାକୁ ଭୁଲୁନାହାନ୍ତି । ସୁରକ୍ଷାବଳଙ୍କ ରବର୍ ବୁଲେଟ୍ ଆଘାତରେ ଅନେକ ଯୁବକ ନିଜ ଚକ୍ଷୁ ହରାଇଥିବା କଥା ଅନେକ ଗଣମାଧ୍ୟମ ବଡ଼ ଜୋରସୋରରେ ପ୍ରଚାର କରିଥିଲେ ଏବଂ ଏହାଦ୍ୱାରା ମାନବାଧିକାର କ୍ଷୁର୍ଣ୍ଣ ହେଉଥିବା କଥା ବି କହିଥିଲେ, ସେହି ବୁଦ୍ଧିଜୀବିଙ୍କୁ ଆମର ପ୍ରଶ୍ନ, ଯେଉଁମାନଙ୍କୁ ନିଜ ଚକ୍ଷୁର ସୁରକ୍ଷା ଦରକାର ସେମାନେ ରାଜରାସ୍ତାକୁ ଓହ୍ଲାଇ ସୁରକ୍ଷାବଳଙ୍କ ଉପରେ ପଥର ଫୋପାଡୁଥିଲେ କାହିଁକି ? ନିଜ ଦେଶ ବିରୋଧରେ କାର୍ଯ୍ୟକରିବା ଦେଶଦ୍ରୋହ ନୁହେଁ କି ? ଦେଶଦ୍ରୋହର ଦଣ୍ଡ ମୃତ୍ୟୁଦଣ୍ଡ ହେବା ଉଚିତ, କେବଳ ଆଖି ନଷ୍ଟ ହୋଇଗଲେ କିଛି ହେବନି । ଏହି ପ୍ରକାରର କାଣ୍ଡ କରୁଥିବା ଯୁବକ ମାନଙ୍କୁ ଏହା ଶିକ୍ଷା ଦେବା ଅତ୍ୟନ୍ତ ଜରୁରୀ ।

ଖୁସିର କଥା ବିଗତ ଦିନରେ କାଶ୍ମୀର ସୀମା ସୁରକ୍ଷାବଳର ଏକ ନିଯୁକ୍ତି ରାଲିରେ ସାତଶହରୁ ଅଧିକ ଯୁବକ ଭାଗ ନେଇଥିଲେ । ଏହା ଦ୍ୱାରା ଯୁବକ ମାନେ ମୁଖ୍ୟସ୍ରୋତକୁ ଫେରିବେ ଆଉ ପଥର ଫୋପାଡ଼ିବା ପରି ଘୃଣ୍ୟ କାମ କରିବେ ନାହିଁ ବୋଲି ମନେ ହୁଏ । ଆମେ କେବଳ ଆଶା କରିପାରିବା ଯେ ସ୍ୱାଧୀନତା ପରଠାରୁ ଆରମ୍ଭ ହୋଇଥିବା କାଶ୍ମୀର ସମସ୍ୟାର ତୁରନ୍ତ ସମାଧାନ ହେଉ ଏବଂ ଘାଟିରେ ଶାନ୍ତିର ବାତାବରଣ ସୃଷ୍ଟି ହେଉ । ଭାରତର ସ୍ୱର୍ଗ କୁହାଉଥିବା କାଶ୍ମୀରର ବର୍ତ୍ତମାନ ଅବସ୍ଥା ଦେଖିଲେ ଭାରି ଅସନ୍ତୋଷ ଲାଗେ ।






## ଗୋହତ୍ୟା ରାଜନୀତି

ବିଗତ ମାସରେ ଭାରତର କେନ୍ଦ୍ର ସରକାର ଏକ ନିୟମ ଆଣିଥିଲେ ଏହାଦ୍ୱାରା ମାଂସ ପାଇଁ ଗୋଧନକୁ ବିକ୍ରୀ କରାଯିବା ଉପରେ କଡ଼ା ପ୍ରତିବନ୍ଧ ଲଗାଇ ଦିଆଯାଇଥିଲା । ଏହା ଫଳରେ ଅନେକ ନିଜର ରୋଜଗାର ଛିନ୍ନ ହେବ କହି ପ୍ରତିରୋଧ କରୁଥିବା ସମୟରେ ଭାରତର ପ୍ରମୁଖ ରାଜନୈତିକ ଦଳର କିଛି କର୍ମୀ ଏହାର ଦୃଢ଼ ବିରୋଧ କରି କେରଳରେ ସର୍ବସମ୍ମୁଖରେ ରାଜରାସ୍ତା ଉପରେ ହିଁ ଏକ ଗୋହତ୍ୟା କରି ମାଂସକୁ ରୋଷେଇ କରି ଖାଇଥିଲେ ଏବଂ ବାଣ୍ଟିଥିଲେ । ଏହାକୁ ଦେଖାଶିଖା ମାଡ୍ରାସ ଆଇ ଆଇ ଟିରେ କିଛି ଛାତ୍ର ମଧ୍ୟ କଲେଜ କ୍ୟାମ୍ପସରେ ଏକ ବିଫ (ଗୋମାଂସ) ପାର୍ଟିର ଆୟୋଜନ କରିଥିଲେ । ଦେଶର ଅନେକ ସହରରେ ଏହି ପ୍ରକାରର ବିରୋଧମାନ ଆୟୋଜନ ହୋଇଥିବାର ଖବର ଗଣମାଧ୍ୟମରେ ପ୍ରସାରିତ ହୋଇଥିଲା । ଖବର ଯେତିକି ଆଶ୍ଚର୍ଯ୍ୟ କରିନଥିଲା ତା'ଠୁ ଢେର ଆଘାତ ଦେଇଥିଲା ଜନସାଧାରଣଙ୍କୁ । ଏହା କେଉଁ ପ୍ରକାରର ନ୍ୟାୟ ବୋଲି ଅନେକେ ପ୍ରଶ୍ନ କରିଥିଲେ ? ବିରୋଧ କରିବାପାଇଁ ଏକ ପଶୁକୁ ସର୍ବସମ୍ମୁଖରେ ହତ୍ୟା କରାଯିବାର ନଜିର ଭାରତୀୟ ଗଣତନ୍ତ୍ରରେ କେବେ ଦେଖିବାକୁ ମିଳିନଥିଲା ।

ଭାରତୀୟ ଜନତା ପାର୍ଟିର ସରକାର କେନ୍ଦ୍ରରେ ଆସିବା ପରେ ଗୋହତ୍ୟା ବିରୋଧରେ ଅନେକ ସଂଗଠନ ଆପେ ଆପେ ସୃଷ୍ଟି ହୋଇଗଲେ । ନିଜକୁ ଗୋରକ୍ଷକ ବୋଲି ବୋଲାଉଥିବା ଏହି ସଂଗଠନ ମାନେ ଦେଶର ବିଭିନ୍ନ ସ୍ଥାନରେ ଗୋହତ୍ୟା ପାଇଁ ହେଉଥିବା ଗୋଚାଲାଣର କେବଳ ବିରୋଧ କରିଲେ ନାହିଁ, ସେମାନଙ୍କ ଆକ୍ରମଣରେ କିଛି ଲୋକ ପ୍ରାଣ ହରାଇବା ପର୍ଯ୍ୟନ୍ତ କଥାଗଲା । ସେମାନଙ୍କ ଦୃଢ଼ ପ୍ରତିବାଦ ସତ୍ତ୍ୱେ ଅନେକ ସ୍ଥାନରେ ଗୋହତ୍ୟା ଓ ଗୋମାଂସ ଭକ୍ଷଣ ହେଉଥିବାର ଦୃଷ୍ଟାନ୍ତ ମିଳିଛି । ଉତ୍ତର ଭାରତର ଅନେକ ସ୍ଥାନ ଯଥା




ଉତ୍ତର ପ୍ରଦେଶ, ହରିଆଣା, ରାଜସ୍ଥାନ, ଆଦି ଅଞ୍ଚଳରେ ଗୋରକ୍ଷକ ମାନଙ୍କ ପ୍ରାବଲ୍ୟରେ ଅନେକ ଦୁର୍ଘଟଣା ମାଣ ବି ଘଟିଛି ଏବଂ ଘଟୁଛି । ସୂଚନାଯୋଗ୍ୟ ଯେ କିଛି ଗଣମାଧ୍ୟମ ଏହା ବି କହୁଛନ୍ତି ଯେ କେନ୍ଦ୍ର ସରକାର ପରୋକ୍ଷରେ ସେମାନଙ୍କୁ ସୁରକ୍ଷା ପ୍ରଦାନ କରୁଛନ୍ତି । ଯାହା ବି ହେଉନା କାହିଁକି, କିନ୍ତୁ ଗୋମାଂସକୁ ନେଇ ଏହି ନିମ୍ନ ଧରଣର ରାଜନୀତି ଉଚିତ ମନେ ହୁଏନାହିଁ ।

## ବ୍ରିଟେନ୍ ଉପରେ ଆତଙ୍କବାଦୀ ଆକ୍ରମଣ

ସଦ୍ୟପ୍ରାପ୍ତ ସମାଚାର ଅନୁଯାୟୀ ଇଂଲଣ୍ଡରେ ଆତଙ୍କବାଦୀ ଆକ୍ରମଣ ହୋଇଛି । ରବିବାରଦିନ ଛୁଟି କାଟୁଥିବା ବ୍ରିଟେନ୍‌ବାସୀ ହଠାତ୍ ଆକ୍ରମଣରେ ସ୍ତବ୍ଧ ହୋଇ ଯାଇଛନ୍ତି । ରାସ୍ତାରେ ଗାଡ଼ି ମଡ଼ାଇ ଅନ୍ୟୁନ କୋଡିଏ ଜଣଙ୍କୁ ଗମ୍ଭୀରଭାବରେ ଆହତ କରିବାପରେ ଆକ୍ରମଣକାରୀ ତିନି ଆତଙ୍କବାଦୀ ଗୋଟିଏ ରେସ୍ତୋରାଁରେ ପଶି ନିଜକୁ ବୋମାଦ୍ୱାରା ଉଡ଼ାଇଦେବା ଧମକ ଦେଇ ବାର ଇଞ୍ଚ ଲମ୍ବା ଛୁରୀରେ ଅନେକ ଲୋକଙ୍କ ଗଳା କାଟିଦେବା ସହ ଭୁଷି ହତ୍ୟା କରିଛନ୍ତି । ହତ୍ୟା କରୁଥିବା ସମୟରେ ସେମାନେ "ଦିସ୍ ଇଜ୍ ଫର୍ ଆଲ୍ଲା (ଏହା ଆଲ୍ଲାଙ୍କ ପାଇଁ)" ବାଇଶି ଜଣ ଏହି ଆକ୍ରମଣରେ ପ୍ରାଣ ହରାଇଥିବା ବେଳେ ଅନେକ ଆହତ ହୋଇଛନ୍ତି । ଅବଶ୍ୟ ଆକ୍ରମଣ ହେବାର ଆଠ ମିନିଟ୍ ଭିତରେ ପୋଲିସର ତ୍ୱରିତ କାର୍ଯ୍ୟାନୁଷ୍ଠାନ ଫଳରେ ସମସ୍ତ ଆତତାୟୀ ପ୍ରାଣ ହରାଇଥିଲେ, କିନ୍ତୁ ଏହି ଘଟଣା ବିଶ୍ୱବ୍ୟାପୀ ଆଲୋଡ଼ନ ସୃଷ୍ଟି କରିଛି । ଏହି ଘଟଣା ପଛରେ ଆଇଏସ୍ ସମୂହର ହାତ ଥାଇପାରେ ବୋଲି ଅନୁମାନ କରାଯାଉଛି ।

ସମଗ୍ର ବିଶ୍ୱ ଉପରେ ବର୍ତ୍ତମାନ ଆତଙ୍କବାଦର ଛାୟା । ଏହାଫଳରେ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ଅନେକ ଦେଶମାନଙ୍କ ତାଲିକାର ସପ୍ତମ ସ୍ଥାନରେ ରହିଛି ଭାରତ । ଭାରତପରି ଏକ ବହୁଧର୍ମୀୟ ସମାଜରେ ଅଶାନ୍ତି ବିସ୍ତାର କରିବାର ମସୁଧା ନେଇ ଆତଙ୍କବାଦୀମାନେ ନିଜ ଘୃଣ୍ୟ କାର୍ଯ୍ୟକଳାପ କରୁଛନ୍ତି ।






ଏହାର ଦୃଢ଼ ବିରୋଧ ହେବା ସହିତ ଆତଙ୍କବାଦକୁ ପ୍ରୋତ୍ସାହନ ଦେଉଥିବା ସମାଜ ବା ଦେଶକୁ କଡ଼ା ଜବାବ ଦେବାକୁ ପଡ଼ିବ ।

## ସାହିତ୍ୟରେ ଆତଙ୍କବାଦ

ବିଗତ ମାସରେ ଏକ ଅନନ୍ୟ ଧରଣର ଆତଙ୍କବାଦର ଶୀକାର ହେବାକୁ ପଡ଼ିଥିଲା । ସାହିତ୍ୟରେ ପୁଣି ସନ୍ତ୍ରାସବାଦ କେମିତି ? କିଛିଦିନ ହେବ ଫେସବୁକ୍ ଓ ସୋସିଆଲ୍ ମିଡ଼ିଆରେ ନାରୀମାନଙ୍କୁ ଅପମାନ ଦେଉଥିବା କିଛି କୁତ୍ସିତ ଓ ଅଶ୍ଳୀଳ କବିତା ଘନ ଘନ ଭାବରେ ପ୍ରସାରିତ ହେବାରେ ଲାଗିଥିଲା । ବିଶେଷ କରି ସାବିତ୍ରୀ ବ୍ରତର ଅନତି ପୂର୍ବରୁ ଏହା ଅଧିକ ପ୍ରବଳତାର ସହ ହେବାରେ ଲାଗିଲା । ସବୁଠାରେ କେବଳ ନାରୀମାନଙ୍କୁ ଅଧର୍ମୀ, ଉଶୃଙ୍ଖଳିତା, ବ୍ୟଭିଚାରିଣୀ ଆଦି ଭାବରେ ଦର୍ଶାଇ କବିତା ଓ କ୍ଷୁଦ୍ର କଥାମାନ ପ୍ରକାଶିତ ହେବାରେ ଲାଗିଲା । ଏହାକୁ ବିରୋଧ କରି ଲେଖିବା ପରେ କିଛି (ନିଜକୁ ନିଜେ ଲେଖକ ବୋଲି କୁହାଉଥିବା) ଲେଖକଙ୍କ କ୍ରୋଧର ଶୀକାର ହେବାକୁ ପଡ଼ିଲା । ଯଦିଓ ଫେସବୁକରେ ଏହା ସପକ୍ଷରେ ଅନେକ ବ୍ୟକ୍ତି ମତ ଦେଇଥିଲେ ତଥାପି କିଛି କୁତ୍ସିତ ସ୍ୱଭାବର ବ୍ୟକ୍ତି ଏହାକୁ ନେଇ ଯୁକ୍ତି କରିବା ସହିତ ଆମକୁ ସର୍ବସାଧାରଣରେ ଅପମାନିତ କରିବା ଭଳି ପଦକ୍ଷେପ ନେବାରୁ କ୍ଷାନ୍ତ ହୋଇନଥିଲେ । ଏହାର ଦୃଢ଼ ନିନ୍ଦା କରିବା ସହିତ ସଂପୃକ୍ତ ବ୍ୟକ୍ତିଙ୍କ ପ୍ରତ୍ୟେକ ଆକ୍ରମଣକୁ ପ୍ରତିହତ କରିବା ପରେ କିଛି ବୟୋଜ୍ୟେଷ୍ଠ ବନ୍ଧୁଙ୍କ ମତାମତକୁ ପାଥେୟ କରି ସେହି ଯୁକ୍ତିରୁ ନିଜକୁ ଦୂରେଇ ରଖିବାକୁ ବାଧ୍ୟ ହୋଇଥିଲି ।

ନାରୀ ମାଆ, ଆଉ ମାଆର ସମ୍ମାନ ହାନୀ କରୁଥିବା କୌଣସି କୃତୀକୁ ଆମେ ପ୍ରୋତ୍ସାହନ ଦେବୁନାହିଁ କିମ୍ବା ପ୍ରକାଶିତ କରିବୁ ନାହିଁ । ବିଶେଷ କରି ବାକ୍ ଚାତୁରୀ ଓ ଅଶ୍ଳୀଳ ଇଙ୍ଗିତ ଥିବା କବିତାକୁ ଆମେ ପ୍ରତ୍ୟକ୍ଷରେ ନିନ୍ଦା କରିବାକୁ ପଛାଇବୁ ନାହିଁ ।






ଶେଷରେ କହିବାକୁ ଚାହିଁବୁ, ସାହିତ୍ୟ ସାଧନା ଏକ ସାରସ୍ୱତ ସାଧନା ଏବଂ ଏହା ମାଆ ସରସ୍ୱତୀଙ୍କ ଅପାର କରୁଣାରୁ ମିଳିଥାଏ । ତେଣୁ ଜଣେ ଚାହିଁଲେ କବି ବା ଲେଖକ ହୋଇପାରିବ ନାହିଁ, ଏଥିପାଇଁ ଦୈବୀ ଆଶୀର୍ବାଦର ଆବଶ୍ୟକତା ରହିଛି । କବି ହୁଅନ୍ତୁ ବା ଲେଖକ ଆପଣଙ୍କୁ ଧୈର୍ଯ୍ୟବାନ ହେବାକୁ ହେବ, ନଚେତ ଆପଣଙ୍କୁ ପାଠକ ପାଠିକାମାନେ ସମ୍ମାନ ଦେବେନାହିଁ । ଧୈର୍ଯ୍ୟହରା ହୋଇଯିବା କିମ୍ବା ନିଜସ୍ୱ କୃତି ସର୍ବଶ୍ରେଷ୍ଠ ବୋଲି କହି ଯୁକ୍ତି କରିବା ଦ୍ୱାରା ନିଜସ୍ୱ ସମ୍ମାନ ହାନୀ ହେବ ସିନା । ପାଠକୀୟ ମତାମତକୁ ସମ୍ମାନ ଦିଅନ୍ତୁ । ସମସ୍ତଙ୍କୁ ସବୁକିଛି ଭଲ ଲାଗିବ ବୋଲି ମାନେ ନାହିଁ, ହୁଏତ ଆପଣଙ୍କ କବିତାକୁ ଶହେରେ ନବେ ଜଣ ପସନ୍ଦ କରିପାରନ୍ତି, କିନ୍ତୁ ଯେଉଁ ଦଶଜଣ ଅପସନ୍ଦ କରନ୍ତି, ସେମାନେ ବି କୌଣସି କାରଣରୁ ହିଁ ଅପସନ୍ଦ କରିଥାନ୍ତି, ସେହି କାରଣକୁ ସମ୍ମାନ ଦିଅନ୍ତୁ ।

## ଆହ୍ୱାନ ଓଡ଼ିଆ ହ୍ୱାଟସ୍ଆପ୍ ଗ୍ରୁପ୍

ଆହ୍ୱାନ ଓଡ଼ିଆ ପରିବାର ଓ ଆହ୍ୱାନ ଇ-ପତ୍ରିକାର ଲେଖକ ଓ ସହାୟକଙ୍କ ଏକ ଗୋଷ୍ଠୀ ହ୍ୱାଟସ୍ଆପରେ ନିର୍ମାଣ କରାଯାଇଛି । ଚାଳିଶି ଜଣ ସଦସ୍ୟଙ୍କୁ ନେଇ ଏହି ଗ୍ରୁପ୍ ବର୍ତ୍ତମାନ ପ୍ରତିଦିନ ସାହିତ୍ୟ ଚର୍ଚ୍ଚାରେ କିଛି ସମୟ ଦେଉଥିବା ବେଳେ ଆଗାମୀ ଦିନରେ ଏହାକୁ ବ୍ୟାପକ କରାଯିବାର ବ୍ୟବସ୍ଥା ହୋଇଛି । କେବଳ ସାହିତ୍ୟ ଓ ଭାଷା ସମ୍ବନ୍ଧିତ ଲେଖାକୁ ନେଇ ଏହି ଗ୍ରୁପରେ ପରିଚର୍ଚ୍ଚା ହେଉଥିବା ବେଳେ ଫଟୋ ଓ ଭିଡ଼ିଓ ଆଦିର ପରିବେଷଣକୁ ଦୃଢ଼ଭାବରେ ମନା କରାଯାଇଛି । ସାହିତ୍ୟପ୍ରେମୀ ବନ୍ଧୁ ଶ୍ରୀ ଅରବିନ୍ଦ ଆଚାର୍ଯ୍ୟଙ୍କ ପ୍ରସ୍ତାବକୁ ସ୍ୱାଗତ କରାଯାଇ ଏହି ଗ୍ରୁପ୍ ନିର୍ମାଣ କରାଯାଇଥିବା ବେଳେ ଏଥିରେ ପ୍ରଶାନ୍ତ ଭୂୟାଁ, ସୁଶାନ୍ତ ପୁରୋହିତ, ଦୀପକ ଷଡ଼ଙ୍ଗୀ, ଲିଙ୍ଗରାଜ ପ୍ରସାଦ ପଟ୍ଟନାୟକଙ୍କ ସମେତ ଅନେକ ଉତ୍ସାହୀ ସାହିତ୍ୟିକ ପ୍ରତିଦିନ ଆମ ଭାଷା ଓ ସାହିତ୍ୟ ସମ୍ବନ୍ଧରେ ଚର୍ଚ୍ଚା






କରୁଛନ୍ତି । ଏହି ଗ୍ରୁପରେ ଯୋଗ ଦେବାପାଇଁ ଆହ୍ୱାନ ପତ୍ରିକାର ଶେଷ ପୃଷ୍ଠା ଦେଖନ୍ତୁ ।

ଚଳିତ ବର୍ଷର ଏହି ସଂସ୍କରଣ ଆପଣମାନଙ୍କୁ ଭେଟି ଦେଉଥିବା ବେଳେ ଆଗାମୀ ଦିନରେ ରଜପର୍ବ ଓ ରଥଯାତ୍ରା ପାଇଁ ଆପଣମାନଙ୍କୁ ଅଭିନନ୍ଦନ ଜଣାଉଛି ।

ଧନ୍ୟବାଦ

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ପ୍ରତିଷ୍ଠାତା - ସମ୍ପାଦକ

**ପବିତ୍ର ରଜପର୍ବ**

**ଏବଂ ରଥଯାତ୍ରା ପାଇଁ**

**ସମସ୍ତ ଓଡ଼ିଆ ଭାଇଭଉଣୀଙ୍କୁ**

**ହାର୍ଦ୍ଦିକ ଅଭିନନ୍ଦନ**

**ଓ ଶୁଭେଚ୍ଛା ।**






# ପାଠକୀୟ ମତାମତ

ପ୍ରଥମେ ପ୍ରଣାମ । 'ଆହ୍ୱାନ' ପରିବାରର ସବୁ ସଦସ୍ୟ ଆଉ ସଦସ୍ୟାମାନଙ୍କୁ ଯଥାଯୋଗ୍ୟ ସମ୍ମାନ । 'ଆହ୍ୱାନ'ର ପ୍ରଚ୍ଛଦ ଏବଂ ପରିପାଟୀ କ୍ରମଶଃ ଉଚ୍ଚକୋଟୀର ହୋଇପାରୁଛି ତେବେ ନିୟମିତ ପ୍ରକାଶନ ପ୍ରତି ନଜର ଦେଲେ ଭଲ ହୋଇପାରନ୍ତା । ଏକଥା ସତ ଯେ ଏମିତି ଏକ ଇ-ପତ୍ରିକା ସଂପାଦନା ଏବଂ ପ୍ରକାଶନ ଖୁବ୍ ସହଜ ନୁହେଁ । ସଂକ୍ଷେପରେ ମଇ ସଂସ୍କରଣ ପାଠ କରିବାପରେ ହୃଦୟଙ୍ଗମ କରିଲି ଯେ 'ଆହ୍ୱାନ'ର ଚମକ ଏବଂ ଗୁଣଗତ ଉପାଦାନ ଯଥାର୍ଥ ରହିଛି ।

ଆଗାମୀ ସଂସ୍କରଣ ପାଇଁ କବିତାଟେ ପଠାଇଲି । ବିବେଚନା ସଂପାଦନାମଣ୍ଡଳୀ ହାତରେ । 'ଆହ୍ୱାନ'ର ଶୁଭକାମନା ସହ ରହିଲି ।

ଇତି,

ବରୁଣ କୁମାର ଦାସ

+========================================+

ସଂପାଦକଙ୍କ ଉତ୍ତର : ଆପଣଙ୍କ ମତାମତକୁ ସାଦରେ ଗ୍ରହଣ କରୁଛି । ଆହ୍ୱାନର ଗୁଣଗତ ଚମକର କାରଣ ଆପଣଙ୍କ ପରି ଲେଖକଗୋଷ୍ଠୀ । ଏବଂ ଅଗଣିତ ପାଠକପାଠିକା, ଯେଉଁମାନେ ମାସ ପରେ ମାସ ଏହି ପତ୍ରିକାକୁ ଆଦରର ସହ ପଢ଼ିବାପାଇଁ ମନୋନିବେଶ କରି ଆସୁଛନ୍ତି ।

ଏକଥା ସତ ଯେ ଆହ୍ୱାନର ପ୍ରତିମାସର ସଂସ୍କରଣ ଅନେକ ସମୟରେ ଅବହେଳାର ଶୀକାର ହେଉଛି । ଏହାର କାରଣ ମଧ୍ୟ ଅନେକ ସମୟରେ ମୁଁ ଉଲ୍ଲେଖ କରିଛି, ତଥାପି ପୁଣିଥରେ ଏଠାରେ ଜଣାଇଦେବାକୁ ଉଚିତ ମନେ କରୁଛି ।

ଆହ୍ୱାନ ଇ-ପତ୍ରିକାର ପ୍ରତ୍ୟେକ ମାସର ସଂସ୍କରଣ ପଛରେ ଥିବା ସମସ୍ତ ପରିଶ୍ରମ କେବଳ ମୁଁ ଜଣେ ହିଁ କରୁଛି । ଲେଖା ସଂଗ୍ରହ, ସେସବୁକୁ ଓଡ଼ିଆ ଟାଇପ୍ କରିବା,






ପୁଣି ଡିଟିପିରେ ସେ ସବୁକୁ ସଜାଇବା ସହିତ ପିଡ଼ିଏଫ୍ ତିଆରି କରିବା, ୱେବ୍ ସାଇଟରେ ସେ ସବୁକୁ ସାଇତିବା, ଏବଂ ମୁଖ୍ୟ ପୃଷ୍ଠାରେ ଦେଖାଇବା ଏବଂ ସ୍ଥଳବିଶେଷରେ ଭୁଲଭଟକା ବାହାରିଲେ ପୁଣିଥରେ ସେ ସବୁକୁ ମୂଳରୁ ସଠିକ୍ କରି କରିବା ଆଦି କାମ ମୁଁ ଜଣେ ହିଁ କରିଥାଏ । ଏହି ସବୁ କର୍ମ ଶ୍ରମସାପେକ୍ଷ ଏବଂ ସମୟ ଆବଶ୍ୟକ କରେ । ବେଳେ ବେଳେ ମୋର ଅନ୍ୟ କର୍ମବ୍ୟସ୍ତତା ହେତୁ ଏଥି ପାଇଁ ସମୟ ଦେଇପାରେ ନାହିଁ, ସେଥିପାଇଁ ମାସର ଅନେକ ଦିନ ମୋତେ ଅର୍ଦ୍ଧରାତ୍ରୀରେ ନ ଶୋଇ ଏହି କାମ ପାଇଁ ସମୟ ଦେବାକୁ ହୁଏ । ତଥାପି ବେଳେ ବେଳେ ସ୍ୱାସ୍ଥ୍ୟଗତ ସମସ୍ୟା ହେଉ ଅବା ଅନ୍ୟ କୌଣସି ଅନିବାର୍ଯ୍ୟ କାରଣ ବଶତଃ ଏହା ପ୍ରକାଶିତ ହୋଇପାରେ ନାହିଁ ।

ଏଥିପାଇଁ ମୁଁ ସମସ୍ତ ଲେଖକଲେଖିକାଙ୍କୁ ଅନୁରୋଧ କରିଥିଲି ସେମାନେ ନିଜସ୍ୱ ଲେଖାକୁ ଓଡ଼ିଆ ୟୁନିକୋଡ଼ରେ ଟାଇପ୍ କରି ପଠାଇଲେ ମୋତେ ଅଳ୍ପ ପରିଶ୍ରମ କରିବାକୁ ପଡ଼ନ୍ତା, କିନ୍ତୁ ଅନେକ ବନ୍ଧୁଙ୍କୁ ଟାଇପ୍ କରିବା ଆସେନି, ଏଥିରେ ସେମାନଙ୍କ ଦୋଷନାହିଁ । କିନ୍ତୁ ସେ ସବୁ କାମ କରିବା ବେଳକୁ ସମୟ ଅତିକ୍ରାନ୍ତ ହୋଇଯାଏ । ଆହ୍ୱାନ କୌଣସି ବ୍ୟବସାୟିକ ଲାଭ ପାଇଁ ପ୍ରକାଶିତ ହୁଏନାହିଁ, ତେଣୁ ଏହାର ପ୍ରକାଶନରେ ହେଉଥିବା ଖର୍ଚ୍ଚ ମୁଁ ବ୍ୟକ୍ତିଗତ ଭାବରେ ତୁଲେଇଥାଏ । ତେଣୁ କାହାକୁ ଅର୍ଥଦେଇ ଏହି ସବୁ କାମ କରାଇବା ଭଳି ସାହାସ ଜୁଟାଇ ପାରେନାହିଁ ।

ତେବେ ଆଗ ଅପେକ୍ଷା ବର୍ତ୍ତମାନ ଆହ୍ୱାନ ଅଧିକ ନିୟମିତ ଭାବରେ ପ୍ରକାଶିତ ହେଉଛି ଏବଂ ଆଶା କରୁଛି ଆଗକୁ ମଧ୍ୟ ହେଉଥିବ । ଆମେ ସବୁବେଳେ ଚେଷ୍ଟା କରିବା କେମିତି ପ୍ରତିମାସରେ ଏହି ପତ୍ରିକା ଆମ ପାଠକମାନଙ୍କୁ ମିଳିପାରିବ ।

ଆପଣଙ୍କ ମତାମତ ପାଇଁ ଧନ୍ୟବାଦ ।

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ପ୍ରତିଷ୍ଠାତା - ପ୍ରକାଶକ - ସଂପାଦକ

ଆହ୍ୱାନ ଇ-ପତ୍ରିକା






# ଆମ ଗାଁ ହାଲଚାଲ



ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

## ମୋ କୁନା ବାହା ହେଇନି

ବଂଶୀର ପୁଅ କୁନାର ବାହାଘର ଠିକ୍ ହୋଇଗଲା । ପୁସ୍ତପୁରରେ ଝିଅ ଘର । ଦିଆନିଆ କଥା ସବୁ ସରିଲା । କାଲି ସନ୍ଧ୍ୟାରେ ଝିଅଘରକୁ ଯାଇ ମୁଦି ପିନ୍ଧେଇଦେଇ ଆସିଲେ । ଝିଅଟା ଦେଖିବାକୁ କାଳେ ବହୁତ ସୁନ୍ଦରୀ ବୋଲି ବଂଶୀ କହୁଥିଲା । କୁନା ବୋଉ କହିଲା, "ଭଲ ଝିଅଟେ ହେଇଥାଉ । ସୁନ୍ଦର ନାତିନାତୁଣୀ ଦି ତିନିଟା ଦେଇଦେଲେ ଆମ ବୁଢ଼ାବୁଢ଼ୀ ବଞ୍ଚିଯିବା ।" ଗାଁ କାର୍ଜିଘର ଦୁଆରେ ସଂଧ୍ୟାରେ ସବୁ ବସିଥିଲେ, ବଂଶୀ ଏଇ କଥା ସବୁ କହିଲା । କାର୍ଜିଏ କହିଲେ, "ପାଠୋଇ ବୋହୁ ଆଣୁଛୁ ନା ନାହିଁ ? ତୁ ତ କେବେ ସ୍କୁଲ୍ ପିଣ୍ଡା ମାଡ଼ିଲୁନି । ଆଉ ତୋ ପୁଅ ସ୍କୁଲ ଯାଇଥାନ୍ତା କି ନାହିଁ, ତାକୁ ସୁରାଟ୍ ପଠେଇଦେଲୁ । ଅନ୍ତତଃ ପାଠୋଇ ବୋହୁଟେ ଆଣିଥିଲେ ସେ ତା ପିଲାମାନଙ୍କୁ ଦିପଦ ପଢ଼େଇ ତ ପାରିବ ?" ସମସ୍ତେ ହଁ ଭରିଲେ । ସତକଥା । ବଂଶୀ କହିଲା, "ଆଜ୍ଞା ଆପଣେ ତ ଜାଣିଛନ୍ତି, ମୋ ବୋପା ବେଳଥାଉ ଥାଉ ଚାଲିଗଲା । ଘରର ସବୁ ଦାୟିତ୍ୱ ମୋ ଉପରେ ଆସିଲା । କଣ ଆଉ କରିଥାନ୍ତି ? ଇସ୍କୁଲୁ ଗଲେ ଘର ଚଳିଥାନ୍ତା କି ଆଜ୍ଞା ? ସେଇଥିଲାଗି ପାଠପଢ଼ା କଣ କେବେ ଜାଣି ପାରିଲିନି । ପୁଅକୁ ଇସ୍କୁଲୁରେ ନାଁ ଲେଖେଇଥିଲି, ହେଲେ ସେ ଚଷାଘର ପିଲା, କୋଉ ଅକ୍ଷରରେ ତା ମନ ଲାଗିବ । ଫିଦିନ ଆସି ବିଲରେ ହଳଯୋଡିଲା ସିନା ଇସ୍କୁଲ୍ ଯିବା ନାଁ ଧରିଲାନି । ମନେ ମନେ ଭାବିଲି, ପେଟ






ପୋଷିବା କଥା, ବୋପା ଜେଜେବାପା ଅମଳରୁ ଚାରିଭରଣ ଜମି ଅଛି, ସେତିକିରେ ପେଟ ପୋଷିହେବ ବୋଲି ଆଉ ମୁଁ ବି କିଛି କହିଲିନି । ହେଲେ ଆଜ୍ଞା ସୁରାଟ୍ ଯାଉ ବୋଲି ମୋର ଆଉ ତା ମା'ର ଜମା ଇଚ୍ଛା ନଥିଲା । ସିଏ ଏକା ଜିଦ୍ କଲା । ସିଦ୍ଧପୁରର ବସନ୍ତ ତାକୁ କହିବୁଝେଇ ନେଇଗଲା । ଆମେ ଦି ପ୍ରାଣୀ ମନକୁ ବୁଝେଇଦେଲୁ । ଯାଉ, ଯୁଆନ୍ ଟୋକାଟା ସବୁକଥାରେ ଆଡ଼କଲେ ଆମ କଥା ସିଏ ଆଉ ଶୁଣିବ କି ? ପେଟ ପୋଷିବା କଥା । ଏଇଠେ ହଉ କି ସେଇଠେ ? ଦି ପଇସା ରୋଜଗାର କରୁଛି ଆଜ୍ଞା ଆପଣମାନଙ୍କ ଆଶୀର୍ବାଦ ଅଛି ବୋଲି ନା ।”

ସବୁ ଧ୍ୟାନରେ ଶୁଣୁଥିଲେ । ବଳିଆ କହିଲା, “ତୋ ପୁଅ ସୁରାଟ ଗଲାବୋଲି ଘର ଆଗଟା ପକ୍କା ବାଡ଼େଇଦେଲୁନା । ନହେଲେ ତୁ ଚାଷବାସ କରି କେତେ କୋଠାଘର କରିଥାନ୍ତ ?” ସବୁ ହେଁ ହେଁ ହେଇ ହସୁଥିଲେ । କାର୍ଜିକହିଲେ, “ହଉ, ଯା ହେଉ ଆମ ଗାଁ ପିଲା । ଭଲରେ କାମଧନ୍ଦା କରି ଖୁସିରେ ରହିଲେ ଆମେ ବି ଖୁସି । ଚାଲ ସବୁ ଉଠିବା । ସଂଜ ଢେର୍ ହେଲାଣି ।” ସବୁ ଉଠିଲା ବେଳକୁ କିଏ ଜଣେ ଡାକିଲା, “ବଂଶୀ ବଡ଼ପା, ଜଲ୍‌ଦି ଆ । କୁନା ଭାଇ ଫୋନ୍ କରିଛି ।”

ଆମ ଗାଁରେ ଦୁଇଟା ଫୋନ୍ । ଗୋଟେ କାର୍ଜିଘରେ ଆଉ ଗୋଟେ କରଣ ଘରେ । ଗାଁ ବାହରେ ଯେଉଁମାନେ ରହନ୍ତି ସେମାନେ ସବୁ ବେଳଅବେଳରେ ଫୋନ କରିଲେ କରଣ ଆଜ୍ଞାଘରକୁ ଫୋନ୍ କରନ୍ତି । କରଣ ଆଜ୍ଞା ଫୋନଟାକୁ ସେଇଥିପାଇଁ ବାହାରେ ରଖିଦେଇଛନ୍ତି । ବଂଶୀ କାର୍ଜିଙ୍କି ଜୁହାର କରିଦେଇ ଧାଇଁଲା । କୁନା ବୋଉ ଫୋନ ଧରିଥିଲା ଆଉ କାନ୍ଦୁଥିଲା । କୁନାବୋଉର ସବୁବେଳେ ସେଇ କଥା । କୁନାର ଫୋନ ଆସିଲେ ଆଗ ବହେ କାନ୍ଦିବ, ଆଉ ତା ପରେ ଭଲମନ୍ଦ କଥା ହେବ । ଫୋନରେ ଜଣେଇଦେଲା ଯେ ତା ପାଇଁ ଝିଅ ଦେଖା ସରିଲାଣି । ମୁଦି ବି ପିନ୍ଧେଇ ଦେଇଛି । ଶୀଘ୍ର ଆସିଲେ ବାହାଘର କଥା ବୁଝିବା । କୁନା କାଳେ ଭାରି ବିରକ୍ତ ହୋଇଥିଲା । ବଂଶୀ ଫୋନଧରିଲା ବେଳକୁ






କୁନା ବିରକ୍ତ ହୋଇ ଏଣୁତେଣୁ କହୁଥିଲା । ବଂଶୀ କହିଲା, "ହଇରେ, ତୁ କଣ ଏମିତି କହୁଛୁ ? ତୋ ଭଲ ପାଇଁ ତ ଆମେ ସବୁ କରୁଛୁ ।" କୁନା କହିଲା, "ମୋ ପାଇଁ କିଛି କରିବା ଦରକାର ନାହିଁ । ମୁଁ ବାହା ହେବିନି ।" ଫୋନ୍ କାଟିଦେଲା । ବଂଶୀ ଚିନ୍ତାରେ ବସିପଡ଼ିଲା । କୁନାବୋଉର କାନ୍ଦ କମ ହେଉନଥିଲା । କରଣ ଆଜ୍ଞା କଥା ବୁଝି କହିଲେ, ସେ ନିଜେ କୁନା ସହ କଥା ହେବେ । ଆଉ ପଚାରିବେ ସେ କାହିଁକି ଏମିତି କହିଲା ।

ଦିନବେଳର ଖୁସିଟା ରାତିରେ ଦୁଃଖରେ ବଦଳି ଯାଇଥିଲା । କୁନାବୋଉ ତଣ୍ଟିରେ ଖାଦ୍ୟ ଗଳିଲାନି । କାନ୍ଦି କାନ୍ଦି ଶୋଇଗଲା । ବଂଶୀ ଦୁଆର ପାଖରେ ସଅପ ପକେଇ ଶୋଇଗଲା । ସକାଳୁ ସକାଳୁ ଗାଁ ସାରା ସେଇ ଏକ କଥାକୁ ନେଇ ଟୁପୁରୁ ଟାପୁରୁ ଚାଲିଛି । କୁନା ବାହାହେବାକୁ ମନା କଲା କାହିଁକି ? ଗାଁ ତୁଠରେ ସେଇ ଚର୍ଚ୍ଚା । "ବାହା ହେବାକୁ କାହିଁକି ମନା କଲା ?" ବୁଲୁ କହିଲା, "ସିଏ ସୁରାଟରେ ବାହା ହେଇ ଯାଇଥିବ ।" ବୁଲୁ ଆମ ଗାଁର ଜଣେ ଯୁବକ, ଅନେକଥର ସୁରାଟ ଯାଇଛି । ହେଲେ ଗାଁରେ ବାପା କରିଥିବା ଦୋକାନ କଥା ବୁଝୁଛି । ଟଙ୍କାପଇସା ଆଣିବା ପାଇଁ ସେ ସୁରାଟ୍ ଯାଏ ଆସେ । ସେ କହୁଥିଲା, "ବୁଝିଲ, ସୁରାଟ ଝିଅ ଦେଖିବାକୁ ବେଶୀ ଗୋରୀ ଆଉ ସୁନ୍ଦରୀ । ଆମ ଇଆଡ଼ର ଭଳିଆ ସିଙ୍ଗାଣୀନାକି ନାହିଁ । କୁନା ସେଇଠି କାହାକୁ ବାହା ହେଇଯାଇଥିବ ନିଶ୍ଚୟ ।" ହରିଆ କହିଲା, "ବାହା ହେଲେ କହିଦେଉନି । ଏତେ ନାଟହାଟ ତ ହେବାକୁ ହବନି ନା । ତା ବାପାବୋଉ ତା ପାଇଁ କେତେ କଣ କରିଲେ, ସେ ଯାଇ ସୁରାଟରେ ବସି ଅଏସ୍ କରୁଛି । ଛି ଛି..." ଗାଁ ତୁଠର କଥାଟା କିଛି ସମୟପରେ ଗାଁ ବସଷ୍ଟାଣ୍ଡରେ ପହଞ୍ଚିଗଲା । ସେତେବେଳକୁ ସମସ୍ତେ ଉଣାଅଧିକେ ଜାଣିଗଲେଣି ଯେ କୁନା ବାହା ହେଇଯାଇଛି । କଥାରେ ଅଛି ତୁଣ୍ଡବାଇଦ ସହସ୍ର କୋଶ । ଗାଁ ବସଷ୍ଟାଣ୍ଡରୁ କଥାଟା କେଜାଣି କେମିତି ପୁସ୍ତୁପୁର ପହଞ୍ଚିଗଲା ।

ସଂଜ ନ ହେଉଣୁ, ପୁସ୍ତପୁର ଝିଅଘର ଲୋକ ଆସି ବଂଶୀଘରେ ହାଜର ।






ବଡ଼ଜୋରରେ ପାଟିତୁଣ୍ଡ ହେଉଥିଲା । ଅଧା ଗାଁ ଲୋକ ଆସି ବଂଶୀଘର ଆଗରେ ହାଜର ହୋଇଥିଲେ । ଝିଅଘର ଲୋକେ ପାଟିତୁଣ୍ଡ କରୁଥିଲେ । "ତମ ପୁଅ ଯଦି ସୁରାଟରେ ବାହା ହେଇଯାଇଥିଲା ତମେ ଆମ ଝିଅକୁ ମୁଦି ପିନ୍ଧେଇବାକୁ ଆସିଥିଲ କେମିତି ? ଗାଁରେ ଭଦ୍ରଲୋକି ଦେଖାଇବା ପାଇଁ ଆମ ଝିଅର ଜୀବନଟା ମାଟି କରିଦେଇଥାନ୍ତ ତମେ ?" ଘର ବାହରେ ଥିବା ଲୋକମାନେ ଛିଛାକର କରୁଥିଲେ । ହରିଆ କହିଲା, "କୁନାଟା ଏମିତି କରିବ ବୋଲି ଆମେ ସ୍ୱପ୍ନରେ ହେଲେ ଭାବିନଥିଲୁ । ବାପାଟାର ଇଜ୍ଜତ ଚାଲିଗଲା । ଛି ଏମିତିକା ପୁଅ ଥିଲେ କେତେ ନଥିଲେ କେତେ ।" ପ୍ରାୟ ଊଣାଅଧିକେ ସମସ୍ତେ ସେଇ ଏକା କଥାକୁ ଧରିବସିଥିଲେ । ଘର ମଝି ଅଗଣାରେ ବଂଶୀ ଅପରାଧିପରି ବସିଥିଲା, କୁନାବୋଉ କାନିଜାକିଦେଇ ସୁଁ ସୁଁ ହେଇ କାନ୍ଦୁଥିଲା । ସେ ଯା ହେଉ, କିଛି ସମୟର ହାଟତାମସା ପରେ ଝିଅଘର ଲୋକେ ପିନ୍ଧେଇଥିବା ମୁଦି ଫେରେଇଦେଇ ଚାଲିଗଲେ । ଘରେ ନିରବତା ବ୍ୟାପିଗଲା । ବାହାରେ ଥିବା ଲୋକମାନେ ମଧ୍ୟ ନିଜ ନିଜ ଘରକୁ ଚାଲିଗଲେ ।

ଦୁଇ ଦିନ ହେଇଗଲାଣି । ଘରେ ଖିଆପିଆ ନାହିଁ । କୁନାବୋଉ ଶେଯ ଛାଡୁନି । କାନ୍ଦିକାନ୍ଦି ମୁହଁଟା ଫୁଲିଗଲାଣି । ବଂଶୀ ବିଲକୁ ଯିବ ବୋଲି ବାହାରୁଥିଲା, ହେଲେ ଲୋକଲାଜରେ ଯାଇପାରିଲା ନାହିଁ । ଦିପହର ବେଳକୁ ସାହାସ ସଞ୍ଚି ସେ କରଣ ଆଜ୍ଞାଙ୍କ ଘରେ ଯାଇ ପହଞ୍ଚିଲା ଆଉ ସବୁକଥା କହିଲା । ଅନେକ ଲୋକ ଆଜ୍ଞାଙ୍କ ଦୁଆରେ ବସିଛନ୍ତି । ସବୁଦିନ ଦିପହର ବେଳକୁ କରଣ ଆଜ୍ଞା ଖାଇଦେବାପରେ ବସି ଏମିତି ବୈଠକ କରନ୍ତି । ଗାଁର ଆଉ ସବୁ ଲୋକଙ୍କର ଭଲମନ୍ଦ ବୁଝନ୍ତି । କରଣ ଆଜ୍ଞା ଟିକେ ଚିନ୍ତାକରି କହିଲେ, "ଆଚ୍ଛା କୁନା ବାହା ହେଲା କେବେ ? ଆଉ କାହାକୁ ?" ବଂଶୀ ମୁଣ୍ଡ ଉଠେଇ ଚାହିଁଲା ଆଉ କହିଲା, "ସେ କଥା ତ ଆମେ ଜାଣିନୁ । ଲୋକେ ଯାହା କହୁଛନ୍ତି । ବୁଲୁ କହୁଥିଲା ବୋଲି କହୁଥିଲେ ।" କରଣ ଆଜ୍ଞା କହିଲେ, "ଓହୋ, ବୁଲୁ କହିଦେଲା






ବୋଲି ସବୁ ମାନିନେଲେ ? କାଲିକୁ ବୁଲୁ କହିବ ସୁରାଟରେ ପାଞ୍ଚଗୋଡ଼ିଆ ହାତୀ ଅଛି ବୋଇଲେ ବି ସବୁ ମାନିନେବେ ନା କଣ ?" ସବୁ ଫେଁ କିନା ହସିଦେଲେ । କରଣ ଆଜ୍ଞା କହିଲେ, "ହସୁଛ କଣ ? ତମେ ସବୁ ଦୋଷୀ । ବୁଝିଲ କିଛି ନ ଜାଣି ସବୁ ଦୋଷ ଲଦି ଦେଲ ବଂଶୀ ଉପରେ ? କାହିଁ ଗଲ ଡାକି ଆଣିବ ସେ ବୁଲୁକୁ ।" ଜଣେ କିଏ ଉଠି ଧାଇଁଗଲା । କିଛି ସମୟପରେ ବୁଲୁ ଆସି ପହଞ୍ଚିଲା । କରଣ ଆଜ୍ଞା ବୁଲୁକୁ ଦେଖି କହିଲେ, "ହଇରେ କୁନା ବାହାଘରରେ ଭୋଜି କରିଥିଲା ? କଣ କଣ ସବୁ କରିଥିଲା କହିଲୁ ?" ବୁଲୁ ଥତମତ ହେଇ କହିଲା, "ମୁଁ କେମିତି ଜାଣିବି ? ମୁଁ କଣ ଥିଲି କି ?"

- ଓହ୍ । ତୁ ନଥିଲୁ ଯେତେବେଳେ ଜାଣିଲୁ କେମିତି ଯେ କୁନା ବାହା ହେଇଛି ?

- ମୁଁ କେତେବେଳେ କହିଲି କୁନା ବାହା ହେଇଛି ?

ସମସ୍ତେ ମୁହଁ ଫେରେଇ ବୁଲୁକୁ ଚାହିଁ କହିଲେ, ତୁଠରେ କହୁନଥିଲୁ ।

- ତୁଠରେ ତ ମୁଁ ଏତିକି କହିଥିଲି ଯେ ସୁରାଟରେ ଝିଅ ସୁନ୍ଦର, କୁନା କାଳେ ସେଇଠି ବାହା ହେଇପଡ଼ିଥିବ ବୋଲି । ସତରେ ହେଇଯାଇଛି ବୋଲି ମୁଁ କହିନି ତ ?

କରଣ ଆଜ୍ଞା ବୁଲୁକୁ କଡ଼ମଡ଼ କରି ଚାହିଁ କହିଲେ, "ତୁ ଆଉ ତୋ ଗପ ପାଇଁ ବଂଶୀଘରେ ଆଜି ତା ମୁଣ୍ଡ ନଇଁଗଲା । ବୁଝିଲୁ ? ଛି ଛି... କେତେ ପାଠ ପଢ଼ିଲେ କଣ ହେବ ? ମୁଣ୍ଡରେ ବୁଦ୍ଧିଟିକେ ତ ନାଇଁ । ଯେଉଁ ଜିନିଷଟା ଜାଣିନ, ସେଇ ବିଷୟରେ ଏତେ ଚର୍ଚ୍ଚା କରିବା କଣ ଦରକାର ଥିଲା ? ତୋ କଥା ପାଇଁ ଆଜି ଆମ ପୁରା ଗାଁର ମୁଣ୍ଡ ନଇଁଗଲା ।" ସବୁ ନିରବରେ ଶୁଣୁଥିଲେ, ବୁଲୁ ଆଉ କିଛି କହିଥାନ୍ତା କି କଣ ତା ବାପା ଆସି ପଛରେ ଗଳାରେ ଧକା ଦେଇ କହିଲା, "ତୁ ଏମିତି କାମ କେମିତି କରିପାରିଲୁ ? ଆଉ ଏଇଠି ଠିଆ ହେଇ ଆଜ୍ଞାକୁ ଜବାବ୍ ଦେଉଛୁ ?" ବୁଲୁ ଚୁପ୍ ହୋଇଗଲା । କରଣ ଆଜ୍ଞା କହିଲେ, "ଶୁଣ ବଂଶୀ,






ଯେତେବେଳ ଯାଏଁ କୁନା ନିଜେ କିଛି କହିନି ସେତେବେଳ ଯାଏଁ ଯ୍ଯା ତା କଥାରେ ମୁଣ୍ଡ ପୁରେଇବୁନି ।" ବଂଶୀ କହିଲା, "ଆଜ୍ଞା, ସେ ତ ମନା କରିଦେଲା ସେଦିନ । ତା ବୋଉ ସେ ଦିନଠୁ କିଛି ଖାଇନି ପିଇନି, ଘରେ ରୋଗୀଣା ଭଳି ପଡ଼ିଛି ।"

କରଣ ଆଜ୍ଞା କିଛି ଚିନ୍ତାକଲା ପରେ କହିଲେ, "ହଇରେ ବୁଲୁ । ଆମ ଗାଁ ପିଲାମାନେ ଯେଉଁଠି ରହୁଛନ୍ତି ସେ ଜାଗାରେ ଫୋନ ଅଛି କି ? କେମିତି ସେମାନଙ୍କ ସହ କଥା ହେଇହେବ ?" ବୁଲୁ ପକେଟରୁ ଖାତା କାଢ଼ି ସେଥିରୁ ନମ୍ବର ବାହାର କରିଦେଲା । ସବୁ ଲୋକ ସେମିତି ବସିଥିଲା ବେଳେ କରଣ ଆଜ୍ଞା ଫୋନ କରିଲେ । ବଂଶୀର ହୃଦସ୍ପନ୍ଦନ ବଢ଼ି ଯାଇଥିଲା । କରଣ ଆଜ୍ଞା କିଛି ସମୟ କଥା ହେବାପରେ ଫୋନ ରଖିଲେ ଆଉ କହିଲେ, "କୁନା ଏବେ କମ୍ପାନୀ ଯାଇଛି । ରାତିରେ ଫେରିଲେ ଫୋନ କରିବ, ସେତେବେଳେ ସବୁକଥା ସଫା ସଫା ବୁଝିଦେବା ।"

ସେଦିନ ବଂଶୀ ଆଉ କୁନାବୋଉ କରଣଘର ଦୁଆରେ ବସିରହିଲେ । ସଂଜ ଯାଇ ରାତିହେଲା, ଗୋଟେ ପରେ ଗୋଟେ ଫୋନ୍ ଆସୁଥିଲା । ହେଲେ କୁନାର ଫୋନ୍ ଆସିନଥିଲା । କରଣ ଆଜ୍ଞା ମଧ୍ୟ ବସିଛନ୍ତି ଆଉ ଗାଁର ଅନେକ ଲୋକ । କଥା ପଡ଼ିଛି, ଯଦି କୁନା ବାହା ହେଇଯାଇଥିବ କଣ କରାଯିବ ? କରଣ ଆଜ୍ଞା କହିଲେ, "ବାହା ହେଇଥିଲେ ବୋହୁକୁ ଘରକୁ ଆଣିବ । ପୁଅ ଇଚ୍ଛାରେ ବାହା ହେଇଥିଲେ ଆଉ କଣ କରିବ ? ମନା କରିଲେ ସେ ଆଉ ଘରକୁ ଆସିବକି ?" କୁନାବୋଉ ଏ ସବୁ ଶୁଣି ସୁଁ ସୁଁ ହୋଇ କାନ୍ଦୁଥିଲା । ବଂଶୀ ଆଖିରୁ ଲୁହ ଝରିଗଲା । ପ୍ରାର୍ଥନା କରୁଥିଲା, "ହେ ଭଗବାନେ ହେ ଜଗନ୍ନାଥେ ମୋ ପୁଅ ସେମିତି କିଛି ନ କରିଥାଉ ।" କିଏ ଜଣେ କହିଲା ପାଖ ଗାଁର ପୁରସ୍ତମ (ପୁରୁଷୋତ୍ତମ) ସୁରାଟରେ ବାହା ହେଇଗଲା ଆଉ ଘରକୁ ଫେରିଲାନି । ସେ ଲୋକ କାଳେ ମନ୍ତ୍ରକରିଦେଲେ । ନିଜ ଗାଁଘର ସବୁ ଭୁଲି ସୁରାଟରେ ରହିଗଲା । କରଣ ଆଜ୍ଞା କହିଲେ, "ହେ, ସେ ସବୁ ବାଜେ କଥା । ପୁରୁଷୋତ୍ତମ ବାହା






ହେବବୋଲି ଘରେ କହିଥିଲା । ତା ବାପା ମନା କରିଲା । ମୁଁ ବୁଝେଇଥିଲି, ହେଲେ ସେ ଶୁଣିଲାନି । ପୁଅ ଆଉ କଣ କରିଥାନ୍ତା । ବାପା ସିଧା ମନା କରିଦେଲା ତାକୁ ପୁଅ ବୋଲି ମାନିବାକୁ, ସେଇଥିପାଇଁ ସେ ସୁରାଟରେ ରହିଲା ।” ପଛରେ ବସିଥିଲା ବୁଲୁ କହୁଥିଲା, “ଗଲାଥର ଯାଇଥିଲି ଯେ ତା ବାପାପାଇଁ ଦଶହଜାର ଟଙ୍କା ଦେଇଥିଲା । ତା ବାପା ନେଲାନି । ମନା କରିଦେଲା ।” ସମସ୍ତେ କୁହାକୁହି ହେଉଥିଲେ, “ବାପାମା କଥା ଶୁଣିଲାନି, ତା ଟଙ୍କା ଆଉ କେମିତି ନେଇଥାନ୍ତା ?” ଲୋକମାନଙ୍କ କଥାବାର୍ତ୍ତା ଭିତରେ ଫୋନ ବାଜିଉଠିଲା । କରଣ ଆଜ୍ଞା ଫୋନ ଉଠେଇଲେ ଆଉ ଜଣେଇଦେଲେ ଯେ କୁନା ଫୋନ କରିଛି । ବଂଶୀ ବ୍ୟାକୁଳ ହେଇ ଉଠୁଥିଲା ଫୋନ ଧରି ପୁଅକୁ ପଚାରିବ ବୋଲି । ହେଲେ କରଣ ଆଜ୍ଞା ମନା କରିଦେଲେ ଆଉ ନିଜେ କଥା ହେଲେ ।

“କୁନା, ଖାଇ ସାରିଲୁଣି ?..... ଆଉ ସବୁ ଭଲ ନା ସେଇଠି ?.... ଗାଁ ଆଡ଼େ କେବେ ଆସୁଛୁ ?..... ଇଏ ଆମ ଗାଁ ବୁଲୁ କହୁଥିଲା ତୁ କାଳେ ସୁରାଟରେ ବାହା ହେଇଯାଇଛୁ ? ସତରେ କିରେ ? ... ନାଇଁ ଯଦି ବାହା ହେଇଯାଇଛୁ ବୋଇଲେ କହ, ତୋ ବାପା ମାଙ୍କୁ ମୁଁ ବୁଝେଇଦେବି । ତୋ ଭବିଷ୍ୟ କଥା ତୁ ଚିନ୍ତା କରିବୁ । ତୋ ମୁଣ୍ଡକୁ ହାତ ପାଇଲାଣି ।..... ନାଇଁ ତୁ ସେଦିନ ବାହା ହେବାପାଇଁ ମନା କରିଦେଲୁ ତ ସବୁ କଥା ହଉଛନ୍ତି, ତୁ କାଳେ ସୁରାଟରେ ବାହା ହେଇ ଯାଇଛୁ ବୋଲି ।......ହଉ ନେ ତୋ ବୋଉ ସାଙ୍ଗରେ ଦିପଦ କଥା ହେଇଯା ।” କରଣ ଆଜ୍ଞା କଥା ସରିବାପରେ ଫୋନଟା କୁନା ବୋଉ ଆଡ଼କୁ ବଢ଼େଇଦେଲେ ।

ବଂଶୀର ପାଦଦିଟା ସେତେବେଳକୁ ଥରୁଥିଲା । ସେ ବୁଝିପାରୁନଥିଲା କଣ ହେଉଛି । କୁନା ବୋଉ ଫୋନ ଧରିଥିଲା ସତ ହେଲେ କିଛି କହୁନଥିଲା । ଲାଗୁଥିଲା କୁନା ହିଁ କଣ ସବୁ କହୁଥିଲା । କୁନାବୋଉର ଆଖିରୁ ଧାର ଧାର ଲୁହ ବୋହି ଯାଉଥିଲା । ସବୁ ଲୋକମାନେ ଆଁ କରି ଚାହିଁଛନ୍ତି । କିଏ କଣ କଣ ସବୁ ଭାବୁଛନ୍ତି । ସବୁ ଗୁଣୁଗୁଣୁ ହଉଛନ୍ତି, “କୁନା ସୁରାଟରୁ ଗୋରୀ ବୋହୁ ଆଣିବ ।






ଆମ ଗାଁର ପ୍ରଥମ । ପୁରସ୍ତମକୁ ତା ଗାଁରେ ସିନା ମନା, ହେଲେ ଆମ ଗାଁରେ ବଂଶୀକକା ପୁଅକୁ ମନା କରିବନି ।" ହରିଆ କହୁଥିଲା, "ଭୋଜି ହବ ନା ନାଇଁ ? ଯଦି ସିଏ ସତରେ ବୋହୁ ଧରି ଆସିଲା, ତା ହେଲେ ଆମ ଗାଁରେ ଆଉଥରେ ବାହାଘର କରିବାକୁ ପଡ଼ିବ । ଆମ ଗାଁ ଭଳିଆ ବାହାଘର ନହେଲେ ଆମେ ମାନିବୁନି । ଖାସି ମାଂସ ଭୋଜି ନ ଦେଲେ ଜମା ଚଳିବନି ।" ସବୁ ଏଣୁତେଣୁ ଗୁଣୁଗୁଣୁ ହେଉଥିଲେ, କରଣ ଆଜ୍ଞା ମୁରୁକି ମୁରୁକି ହସୁଥିଲେ । କୁନାବୋଉ ଫୋନଟାକୁ କରଣ ଆଜ୍ଞାଙ୍କ ହାତକୁ ବଢ଼େଇଦେଲା । ସବୁ ପୁଣିଥରେ ନିରବ ହୋଇଗଲେ । ବଂଶୀ କିଛି ବୁଝିପାରୁନଥିଲା । କୁନାବୋଉର ଆଖିରୁ ଲୁହ ଧାର ବହୁଥିଲା । କରଣ ଆଜ୍ଞା ଫୋନ ଧରି ଖାଲି ଏତିକି କହିଲେ, "ହଉ ଯାହା ତ ହେଲାଣି ହେଲାଣି, ତୁ ଏବେ ଗାଁକୁ ଶୀଘ୍ର ଆ । ତୋ ବାପାବୋଉ ଅବସ୍ଥା ଦେଖିଲେ ଜାଣିବୁ କଣ ହେଇଛି । ଟଙ୍କା ଅର୍ଜିବାକୁ ଜୀବନ ପଡ଼ିଛି, ବାପାବୋଉ କଥା ଆଗ ବୁଝୁ ।" କରଣ ଆଜ୍ଞା ଫୋନ ଥୋଇଦେଲେ ।

ବଂଶୀର ବୁଝିବାକୁ ଆଉ ନଥିଲା ଯେ କୁନା ବାହା ହେଇଯାଇଛି । ମନକୁ ମନ ବୁଝେଇଦେଲା, "ହଉ, ପୁଅତ ମୋର । ତା'କୁ ଯାହା ଇଚ୍ଛା ହେଲା କରୁ । ସିଏ ଜୀବନ ସାରା ରହିବ ତା ସାଥିରେ । ଆମେ କେତେଦିନ ଆଉ ରହିବୁ ?"

ପଛରୁ ହରିଆ କହିଲା, "ହେଲେ ଆଜ୍ଞା, ବଂଶୀକକା ଏବେ କଣ କରିବ ?"

କରଣ ଆଜ୍ଞା ହସିଦେଇ କହିଲେ, "କୁନା ପାଇଁ ବୋହୁ ଖୋଜିବ ।" ବଂଶୀର ମୁହଁରେ ସୂର୍ଯ୍ୟ ଉଦୟ ହେବାଭଳି ଖୁସି ଦେଖାଗଲା । ମନେମନେ ଜଗନ୍ନାଥଙ୍କୁ କୋଟି ଜୁହାର କରୁଥିଲା । ମୋ କୁନା ବାହା ହେଇନି ମୋ କୁନା ବାହା ହେଇନି କହି ଖୁସିରେ କାନ୍ଦି ପକାଇଥିଲା ।

ବୀମା ନଗର, ଦ୍ୱିତୀୟ ଗଳି

ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଦୂରଭାଷ : ୯୦୪୦୯୮୫୪୬୩

ଇମେଲ୍ - aahwaan@gmail.com




# ଐତିହାସିକ ନାଟକ



ରଞ୍ଜିତା ପାତ୍ର

ଇତିହାସ ଓ ସାହିତ୍ୟ ଏକା କଥା ନୁହେଁ । ଇତିହାସ ସାହିତ୍ୟରେ ସ୍ଥାନ ପାଏ । ମାତ୍ର ସାହିତ୍ୟ ଇତିହାସରେ ସ୍ଥାନ ପାଏ ନାହିଁ । ଇତିହାସର କଙ୍କାଳ ଉପରେ କଳ୍ପନାର ରକ୍ତମାଂସ ଦେଇ ସୃଷ୍ଟିହୁଏ ସାହିତ୍ୟ ରୂପକ ମାନସ ସନ୍ତାନ । ଇତିହାସ ଓ ସାହିତ୍ୟ ଉଭୟେ ମାନବ ଜାତିର କଲ୍ୟାଣ କରିଥାନ୍ତି । ସାହିତ୍ୟର ଶୈଳୀ ମଧ୍ୟରେ ଇତିହାସର ନବଜନ୍ମ ଘଟେ । ଇତିହାସ ଯେତେବେଳେ ସାହିତ୍ୟରେ ସ୍ଥାନପାଏ ସେତେବେଳେ ଅଧିକ ରସାତ୍ମକ ହୋଇଉଠେ । କାରଣ ସାହିତ୍ୟରେ ଥାଏ ବିଭିନ୍ନ ରସର ମାୟାଜାଲ । ତେଣୁ ପାଠକ ସାହିତ୍ୟ ମାଧ୍ୟମରେ ଇତିହାସକୁ ଜାଣିବାରେ ଖୁବ୍ ଆଗ୍ରହୀ ହୋଇଥାନ୍ତି । ଏହି ସାହିତ୍ୟର ବିଶିଷ୍ଟ ଅଙ୍ଗ ହେଉଛି ନାଟକ । ଦର୍ଶକ ସମ୍ମୁଖରେ ରଙ୍ଗମଞ୍ଚରେ ଅଭିନୟ ଉପଯୋଗୀ ହୋଇପାରିଲେ ନାଟକ ରଚନା ସଫଳ ହୁଏ ।

ଇତିହାସ ଓ ଐତିହାସିକ ନାଟକ ଗୋଟିଏ କଥା ନୁହେଁ । ଇତିହାସ ଅତୀତରେ ଘଟି ଯାଇଥିବା ସତ୍ୟ ଘଟଣାବଳୀକି ରଚିତ ହୋଇଥିବା ବେଳେ ଐତିହାସିକ ନାଟକ ସତ୍ୟ ଓ କଳ୍ପନାର ସମ୍ମିଶ୍ରଣରେ ରଚିତ କଥାବସ୍ତୁ ହୋଇଥାଏ । ମାତ୍ର ଇତିହାସରେ କଳ୍ପନାର ସ୍ଥାନ ନଥାଏ । ଐତିହାସିକ ନାଟକ ସବୁବେଳେ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ବାର୍ତ୍ତାବହ । ଇତିହାସରେ ବୈଜ୍ଞାନିକ ଅନୁଶୀଳନର ଆବଶ୍ୟକତା ଥିବା ବେଳେ ଐତିହାସିକ ନାଟକରେ






ମାନବିକ ଆବେଦନାକୁ ଗୁରୁତ୍ୱ ଦିଆଯାଇଥାଏ । ଇତିହାସକୁ ନେଇ ନାଟକ ରଚନା ହୋଇପାରେ ମାତ୍ର ଐତିହାସିକ ନାଟକକୁ ନେଇ ଇତିହାସ ରଚିତ ହୋଇପାରେନାହିଁ । ଇତିହାସର ଶୁଷ୍କ ଚରିତ୍ର ମଧ୍ୟରେ ନାଟ୍ୟକାର ଜୀବନ ସଂଚାର କରେ ।

ଇତିହାସ ଓ ଐତିହାସିକ ନାଟକ ପରସ୍ପର ବିରୋଧୀ । ଇତିହାସ ସତ୍ୟତାର ସ୍ୱଚ୍ଛତା ରକ୍ଷାକରେ । ମାତ୍ର ଐତିହାସିକ ନାଟକ ସାହିତ୍ୟିକ କଳ୍ପନାର ଖାପ ମିଶାଇବାକୁ ଚେଷ୍ଟା କରେ । ଇତିହାସ ଅତୀତର ଘଟଣାକୁ ବ୍ୟକ୍ତକରେ ମାତ୍ର ଐତିହାସିକ ନାଟକ ଅତୀତର ଘଟଣାକୁ ଉପଲବ୍‌ଧି କରାଇଦିଏ । ଇତିହାସ ଘଟଣା ସହିତ କଳ୍ପନାର ସଂଯୋଗ କରି ନାଟ୍ୟକାର ଐତିହାସିକ ନାଟକକୁ ବାସ୍ତବମୁଖ କରାଇଥାଏ । ଇତିହାସର ଘଟଣା ପ୍ରବାହକୁ ଯଥା ସମ୍ଭବ ପରିବର୍ତ୍ତନ ରଖିଲେ ଐତିହାସିକ ନାଟକ ରଚନା ସଫଳ ହୁଏ । ତେଣୁ ଐତିହାସିକ ନାଟକ ରଚନା କଲାବେଳେ ନାଟ୍ୟକାରଙ୍କୁ ଅନେକ ଅସୁବିଧା ଓ ସାବଧାନତା ଅବଲମ୍ବନ କରିବାକୁ ପଡ଼ିଥାଏ । ଇତିହାସର ମୃତ ଅତୀତ ନାଟକରେ ପାଏ ଜୀବନ୍ୟାସ । ଐତିହାସିକ ନାଟକରେ, ବିଷୟବସ୍ତୁର ସଂଯୋଜନା, ଚରିତ୍ର ଚିତ୍ରଣ, ସଂଳାପ ସଂଯୋଜନା ଓ ମଞ୍ଚ ସଜ୍ଜାରେ ବାସ୍ତବତା ସୃଷ୍ଟି କରାଯାଇଥାଏ । ଫଳରେ ଦର୍ଶକଙ୍କୁ ପ୍ରତୀତ ହୁଏ ଯେ ସେମାନେ ଯାହା ଦେଖୁଛନ୍ତି ସବୁ ସତ ଦେଖୁଛନ୍ତି ।

ଐତିହାସିକ ନାଟକ ଏକ ରୋମାଞ୍ଚକର ଅଧ୍ୟାୟ । ଯେତିକି ରୋମାଞ୍ଚିତ ସେତିକି କୌତୁହଳପ୍ରଦ । ଜ୍ଞାନ ସାଙ୍ଗକୁ ଆନନ୍ଦଦାନ ଐତିହାସିକ ନାଟକର ମୂଳ ଲକ୍ଷ୍ୟ । ଦର୍ଶକ ଅତୀତ ସମ୍ପର୍କରେ ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ଆନନ୍ଦିତ ହୁଅନ୍ତି । ଇତିହାସର ବୀରତ୍ୱପୂର୍ଣ୍ଣ କାହାଣୀ ଦର୍ଶକ ଓ ପାଠକଙ୍କୁ ବହୁ ଭାବରେ ପ୍ରଭାବିତ କରେ । ଦର୍ଶକ ଜାଣିଥାଏ ଯେ ସେ ଯାହା ଦେଖୁଛି ତାହା ଅତୀତରେ ଘଟିଯାଇଥିବା ଘଟଣା । ବାସ୍ତବ ଜଗତ ଓ ଅତୀତରେ ଘଟିଯାଇଥିବା ଘଟଣା






ସହିତ ସେ ତୁଳନା କରିବସେ । ପ୍ରତ୍ୟେକ ଚରିତ୍ରକୁ ସେ ବର୍ତ୍ତମାନର ଚରିତ୍ର ମଧ୍ୟରେ ଦେଖେ । ଫଳରେ ଭିନ୍ନ ଭିନ୍ନ ଅଭିଜ୍ଞତା ଲାଭ କରେ । ସେହି ଅଭିଜ୍ଞତା ତା ମନରେ ସୃଷ୍ଟିକରେ ବର୍ତ୍ତମାନ ସମସ୍ୟାର ସମାଧାନର ରାସ୍ତା ।

ଐତିହାସିକ ନାଟକ ଇତିହାସର ଘଟଣାକୁ ନେଇ ସୃଷ୍ଟ ହୋଇଥିବାରୁ କଥାବସ୍ତୁରେ ମଧ୍ୟ ଇତିହାସର ସତ୍ୟତା ରହିଥାଏ । ତଥ୍ୟଗତ ସତ୍ୟତା ସାଙ୍ଗକୁ ବିଷୟବସ୍ତୁଗତ ଐକ୍ୟ ପ୍ରତି ଦୃଷ୍ଟି ଦେବାକୁ ପଡ଼ିଥାଏ । ପରିବେଶ ସୃଷ୍ଟି, ମଞ୍ଚସଜ୍ଜା ଓ ସମୟର ବ୍ୟବଧାନକୁ ଲକ୍ଷ୍ୟକରି ନାଟ୍ୟକାର ଐତିହାସିକ କଥାବସ୍ତୁକୁ ଆଗେଇ ନେଇଥାଏ । ଇତିହାସର ରାଜନୈତିକ ଘଟଣା ଦୁର୍ଘଟଣା ସାଙ୍ଗକୁ ଯୁଦ୍ଧ-ସମ୍ପର୍କ, ଜୟ-ପରାଜୟ, ଉତ୍‌ଥାନ-ପତନ, ହତ୍ୟା, ମୃତ୍ୟୁଦଣ୍ଡ, ବିଶ୍ୱାସଘାତକତା ଆଦି ଅନେକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ ଜଡ଼ିତ ହୋଇଥାଏ । ଏହି ସମସ୍ତ ଘଟଣାକୁ ଜୀବନ୍ତ ରୂପ ଦେଇଥାଏ ଐତିହାସିକ ନାଟକ । ରୋମାଞ୍ଚକର ପରିବେଶ ମଧ୍ୟରେ ଦ୍ୱନ୍ଦ ଓ ଉତ୍କଣ୍ଠା ତୀବ୍ରତର ହୋଇଥାଏ । ଯେତେ ପରିମାଣରେ ଘଟଣାଟି ରୋମାଞ୍ଚିତ ହୋଇଉଠେ ସେତେ ପରିମାଣରେ ଉତ୍କଣ୍ଠା ସୃଷ୍ଟି ହୁଏ । ଜଟିଳ ଦ୍ୱନ୍ଦ ସୃଷ୍ଟି କରିବା ଐତିହାସିକ ନାଟକର ଏକ ଅନନ୍ୟ ବୈଶିଷ୍ଟ୍ୟ । ତେଣୁ ଦର୍ଶକଟି ପ୍ରଭାବିତ ହେବାପାଇଁ ଯଥେଷ୍ଟ ପରିବେଶ ଐତିହାସିକ ନାଟକରେ ଥାଏ ।

ଐତିହାସିକ ନାଟକର ଚରିତ୍ର ଚିତ୍ରଣ ସମୟରେ ନାଟ୍ୟକାରଙ୍କୁ କେତେକ ରୁଚିପ୍ରତି ଦୃଷ୍ଟି ଦେବାକୁ ହୋଇଥାଏ । ପ୍ରଥମତଃ ଐତିହାସିକ ନାଟକରେ ମୁଖ୍ୟ ଚରିତ୍ର ଗୁଡ଼ିକ ଇତିହାସରୁ ଆସିଥିବା ଆବଶ୍ୟକ । ମୁଖ୍ୟ ଚରିତ୍ରକୁ ଗତିଶୀଳ କରିବାପାଇଁ କାଳ୍ପନିକ ଚରିତ୍ରର ସହଯୋଗ କରାଯାଇଥାଏ । ଏହି କାଳ୍ପନିକ ଚରିତ୍ର ବିଷୟ ଉପଯୋଗୀ ହେବା ଆବଶ୍ୟକ । ଫଳରେ ଦର୍ଶକ ସେହି ଐତିହାସିକ ଚରିତ୍ର ଓ କାଳ୍ପନିକ ଚରିତ୍ର ମଧ୍ୟରେ ଥିବା ସୂକ୍ଷ୍ମ ପାର୍ଥକ୍ୟକୁ ସହଜରେ ଧରିପାରେ




ନାହିଁ । କାଳ୍ପନିକ ଚରିତ୍ର ବିଷୟୋପଯୋଗୀ ହୋଇଥିବାରୁ ଦର୍ଶକ ଓ ପାଠକଙ୍କ ମନରେ ଏକ ସତ୍ୟ ଚରିତ୍ର ପରି ପ୍ରତୀତ ହୁଏ ।

ଐତିହାସିକ ନାଟକରେ ସଂଳାପ ସଂଯୋଜନା ଖୁବ୍ ସତର୍କତାର ସହ କରିବାକୁ ପଡ଼ିଥାଏ । କାରଣ ସଂଳାପ ମାନଙ୍କରେ ଐତିହାସିକ ଚରିତ୍ର ଜୀବନ୍ତ ହୋଇଉଠେ । ସଂଳାପ ବିକାଶୋନ୍ମୁଖୀ ହେବା ତଥା ଇତିହାସ କୈନ୍ଦ୍ରିକ ହେବା ଆବଶ୍ୟକ । ନାଟକର ଅଭିନୟ ତଥା ବ୍ୟବହୃତ ଅନ୍ୟାନ୍ୟ ଉପକରଣ ମଧ୍ୟ ଐତିହାସିକ ଗୁରୁତ୍ୱ ବହନ କରୁଥିବା ଆବଶ୍ୟକ ।

ଗୋଟିଏ ଦୁଇଟି ଇତିହାସର ଘଟଣାକୁ କେନ୍ଦ୍ର କରି ଅନେକ ଐତିହାସିକ ନାଟକ ରଚନା ହୋଇଥିବାର ଉଦାହରଣ ରହିଛି । କେତେବେଳେ ଇତିହାସର ଘଟଣାପ୍ରବାହକୁ ଉଦାହରଣ ଭାବରେ ନାଟକରେ ବ୍ୟବହାର କରାଯାଏ । ସମୟକ୍ରମେ ଏପରି ନାଟକକୁ ଐତିହାସିକ ମାନ୍ୟତା ଦେବାରେ ଦ୍ୱିଧା ପ୍ରକାଶ କରିଛନ୍ତି ସମାଲୋଚକମାନେ । ଐତିହାସିକ ନାଟକରେ ଇତିହାସର ନାମ, ତାରିଖ, ସମୟ, ବିଶ୍ୱାସ, ଦୃଷ୍ଟିଭଙ୍ଗୀ, ଚିନ୍ତା-ଚେତନା, ବେଶ ପରିପାଟୀ, ଚାଲିଚଳଣୀ, ସାଙ୍ଗକୁ ମୁଖ୍ୟ ଘଟଣା ପ୍ରବାହ ରହିବା ଆବଶ୍ୟକ ।

ଇତିହାସର ଘଟଣା ପ୍ରବାହ ଯାହା ହେଉନା କାହିଁକି ଐତିହାସିକ ନାଟକର ସଫଳତା ଓ ବିଫଳତା ନାଟ୍ୟକାରଙ୍କ ଉପରେ ନିର୍ଭର କରେ । ନିରସ ଐତିହାସିକ ନାଟକ ଦର୍ଶକକୁ ଆକର୍ଷିତ କରିପାରେ ନାହିଁ । ପାଠକ ମନରେ ମଧ୍ୟ ଗଭୀର ରେଖାପାତ କରିପାରେ ନାହିଁ । ରସ ସୃଷ୍ଟିକରି ପାଠକ ଏବଂ ଦର୍ଶକକୁ ପ୍ରଭାବିତ କରିବାର ଦକ୍ଷତା ଐତିହାସିକ ନାଟ୍ୟକାରଙ୍କ ରହିବା ଆବଶ୍ୟକ ।

ଐତିହାସିକ ନାଟକ ସୃଷ୍ଟିର ଶହେ ବର୍ଷକୁ  ନେଇ ଆଲୋଚନା କଲେ ଜଣାଯାଏ ଯେ ସମୟକ୍ରମେ ନାଟକରେ ଜାତୀୟ ଭାବଧାରାରେ ପରିବର୍ତ୍ତନ






ଘଟିଛି । ରାମଶଙ୍କର ରାୟ ପ୍ରଥମେ ଐତିହାସିକ ନାଟକ ରଚନା କରିଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଆଉ ଏ ଦିଗରେ ମନୋନିବେଶ କରିନାହାନ୍ତି । ୧୮୮୦ ମସିହାରୁ ୧୯୮୦ ମସିହା (ଶହେ ବର୍ଷ) ମଧ୍ୟରେ ଶହେ ଖଣ୍ଡ ଐତିହାସିକ ନାଟକ ରଚନା ହୋଇନାହିଁ । କିନ୍ତୁ ସାମାଜିକ, ପୌରାଣିକ, ନାଟକର ସୃଷ୍ଟି ଦୃଷ୍ଟିରୁ ଐତିହାସିକ ନାଟକ ସମଗତିରେ ପାଦମିଶାଇ ଚାଲିଆସିଛି । ୧୯୮୦ ମସିହା ପରବର୍ତ୍ତୀ ସମୟରେ ଐତିହାସିକ ନାଟକର ରଚନା ଖୁବ୍ କମ । ମାତ୍ର ଦେଶ ସ୍ୱାଧୀନତା ପୂର୍ବରୁ ବହୁ ଐତିହାସିକ ନାଟକ ରଚିତ ହୋଇଥିଲା । ଜାତୀୟ ଭାବର ଉଦ୍ରେକ କରିବାରେ ସେହି ସବୁ ଐତିହାସିକ ନାଟକର ଭୂମିକା ଅତୁଳନୀୟ । ଦେଶ, ଜାତିପ୍ରେମ ଐତିହାସିକ ନାଟକରେ ରହିଥିବାରୁ ଦର୍ଶକଟି ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଉଠେ । ଐତିହାସିକ ନାଟକର ରୋମାଞ୍ଚକର କାହାଣୀ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରେ । ବୀରପୁରୁଷଙ୍କ ତ୍ୟାଗପୂର୍ଣ୍ଣ ବୀରତ୍ୱ କାହାଣୀ ମନରେ ଗଭୀର ଆଲୋଡ଼ନ ସୃଷ୍ଟି କରେ । ଦେଶ ଓ ଜାତିକୁ ପ୍ରାଣଭରି ଭଲ ପାଇବା ଶିଖାଇଦିଏ । ମାତ୍ର ସ୍ୱାଧୀନତା ପରବର୍ତ୍ତି ସମୟରେ ରଚିତ ଐତିହାସିକ ନାଟକର ସ୍ୱାଦ ଭିନ୍ନ । ବିଭିନ୍ନ ଧରଣର ଐତିହାସିକ ନାଟକ ଜନସାଧାରଣଙ୍କୁ ପ୍ରଭାବିତ କରିବାରେ ଚେଷ୍ଟିତ ହୋଇଛି ।

ସ୍ନାତକୋତ୍ତର ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ

ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ, ବାରିପଦା

ଓଡ଼ିଶା




# ପୂର୍ଣ୍ଣୟର ନଦୀତୀରେ



ମଧୁମିତା ମହାନ୍ତି (ମିତୁ)

ସେଇଠୁ କ'ଣ ହେଲାନା ରାଇଜସାରା ହୁରି ପଡ଼ିଗଲା । ହୋ ହଲ୍ଲା ପାଟି ତୁଣ୍ଡରେ କମ୍ପିଲା ଏ ମୁଣ୍ଡରୁ ସେ ମୁଣ୍ଡ । ସବୁ ଖବର କାଗଜର ପ୍ରଥମ ପୃଷ୍ଠାର ପ୍ରଥମ ଧାଡ଼ି ସେଦିନ ନେଇଥିଲା ସେଇ ଖବର - ଖୁବ୍ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥିଲା ହେଡ୍ ଲାଇନ୍ - "ଶିକ୍ଷକଙ୍କ ଅମାନୁଷିକ କାଣ୍ଡ", "ବାଡ଼ ଯେଉଁଠି କ୍ଷେତ ଖାଏ", "ନାବାଳିକାଙ୍କୁ ଦୁଷ୍କର୍ମ ଅଭିଯୋଗରେ ଶିକ୍ଷକ ଗିରଫ" ଏମିତି କେତେ କ'ଣ । ସମ୍ବାଦଟାର ଗୁରୁତ୍ୱ ଆଉ ଟିକେ ବଢ଼େଇଦେବାପାଇଁ ଗୋଟାଏ ଦି'ଟା ଖବର କାଗଜ ହେଡ୍‌ଲାଇନ୍‌ଟାକୁ ଖାଲି ବଡ଼ ଅକ୍ଷର କରିନଥିଲେ ବରଂ ନାଲି କାଳିରେ ଛପେଇଥିଲେ ଯେ ଆଖି ପକାଉ ପକାଉ ଖବର ଉପରେ ନଜର ଅଲବତ୍ ପଡ଼ିବ ହିଁ ପଡ଼ିବ । ଟିଭିବାଲାଏ ବି ଏକ୍‌ଦମ୍ ପଛେଇ ଯାଇନଥିଲେ, ବିଭିନ୍ନ କୋଣରୁ ଦେଖାଉଥିଲେ ସୁଧୀର ସାରଙ୍କର ଘର-ଘଟଣା କେଉଁଠି ଘଟିଛି ବୋଲି ଅନୁମାନ କରାଯାଉଥିବା ଜାଗା-ମୁଣ୍ଡ କଚାଡ଼ି କାନ୍ଦୁଥିବା ପୀଡ଼ିତାର ବାପା,ମା' - ଏକ ପ୍ରକାର ସଂଜ୍ଞାହୀନ ଅବସ୍ଥାରେ ଥିବା ଝିଅଟିର ଜାଲୁଜାଲୁଆ ମୁହଁ ସହ ଡାକ୍ତରଖାନା ବେଡ଼ ଉପରର ସମ୍ପୂର୍ଣ୍ଣ ଚେହେରା । ଆହୁରି ବି ସେମାନେ ଦେଖାଉଥିଲେ ସୁଧୀର ସାରଙ୍କ ଆଣ୍ଠୁ ଛୁଉଁଥିବା ମୁଣ୍ଡ ସହ ବିଦଗ୍ଧ ସନ୍ତାପିତ ଅବୟବ - ଦେଖାଉଥିଲେ ତାଙ୍କ ଝିଅ ନିତୁକୁ ଯିଏ ସେଇ ବିଚରା ପୀଡ଼ିତାର ଅନ୍ତରଙ୍ଗ ସାଙ୍ଗଥିଲା ।






ଘଟଣା ଘଟିବାର ତିନିଦିନ ବିତିଯାଇଥିଲେ ବି ପୀଡ଼ିତା ରୁଚି ସଂଜ୍ଞା ଫେରି ପାଇନଥିଲା । କେତେବେଳେ କେମିତି ଯଦି ମୁହୂର୍ତ୍ତକ ପାଇଁ ତା'ର ହୋସ ଆସୁଥିଲା ସେ ଖୁବ୍ ଯୋରରେ ଚିତ୍କାର କରି ଉଠୁଥିଲା - ନ ହେଲେ ଜାବୁଡ଼ି ଧରୁଥିଲା ପାଖରେ ବସିଥିବା କେହି ଜଣକୁ । ସେ ମଣିଷ ଚିହ୍ନୁନଥିଲା । ବାପା ମା' କିଏ ଜାଣୁନଥିଲା - ଖାଲି ଅଦ୍ଭୁତ ଏକ ଭୟରେ ଆତଙ୍କରେ ଶିହରି ଉଠୁଥିଲା ତା'ର ସମ୍ପୂର୍ଣ୍ଣ ଶରୀର । ଦୁଇଜଣ ପୋଲିସ୍ କନେଷ୍ଟବଳ ପାଳିକରି ରହୁଥିଲେ ସେଠି - ସେ ଟିକେ ସୁସ୍ଥ ହେଲାମାତ୍ରକେ ତାଠୁ ଜମାନବନ୍ଦୀ ନେବେ ବୋଲି । ହେଲେ ସେ ସୁସ୍ଥ କ'ଣ ହେବ ଦିନକୁ ଦିନ ଯେମିତି କେଉଁ ଅନ୍ଧାରୀ ମୁଲକକୁ ପଶି ପଶି ଯାଉଥିଲା ।

ଘଟଣାଟା ବେଶୀ ଚକ୍ ଚକ୍ କରୁଥିଲା ସୁଧୀର ସାରଙ୍କର ଦଳେ ବିରୋଧୀଙ୍କ ପାଇଁ । ସେ ପର୍ଯ୍ୟନ୍ତ ଗାଁ ପାଇଁ ସାର୍ ଜଣେ ଋଷିପ୍ରତିମ ଲୋକ ଥିଲେ । ଯାହାର ନାଇଁ ତାହାର ସୁବିଧା ଅସୁବିଧାରେ ଛତ୍ରଟେ ଭଳି ଠିଆ ହୋଇଯିବାର - ଟଙ୍କା ପଇସା ଦେଇ ହଉ କି ଶାରୀରିକ ଶ୍ରମ କି ଅବା ମାନସିକ ପରିଶ୍ରମ - ଯେମିତି ବି ହେଉ ବିପଦରେ ପଡ଼ିଥିବା ଲୋକଟାକୁ ସାହାଯ୍ୟ କରିବାର ସାହାସ କେବଳ ତାଙ୍କର ହିଁ ଥିଲା । ମାଗଣାରେ ପିଲାଙ୍କୁ ସେ ନିଜ ଘରେ ପଢ଼ାଉଥିଲେ । ଆଦୌ ଟଙ୍କା ନ ନେଇ ଗାଁର କିଛି ବୁଢ଼ାବୁଢ଼ୀଙ୍କ ଦେଖାରେଖା ନିୟମିତ ଭାବରେ କରୁଥିଲେ । ସେ ସବୁକୁ ନେଇ ଅଶାନ୍ତ ଥିଲେ ତାଙ୍କରି ସ୍କୁଲର ଟ୍ୟୁସନ୍ କରି ଥାଟବାଟରେ ଚଳୁଥିବା ଦି ତିନିଜଣ ଶିକ୍ଷକ । ସୁଧୀର ସାର ଯଦିଓ ସେମାନଙ୍କ ଟ୍ୟୁସନ୍ ପିଲାଙ୍କୁ ନିଜ ଆଡ଼କୁ ଆକର୍ଷିତ କରୁନଥିଲେ ତଥାପି ସେମାନେ ସାରଙ୍କୁ ନିଜର ଶତ୍ରୁ ବୋଲି ଭାବିଥିଲେ । ଏ ଘଟଣା ସେମାନଙ୍କୁ ବେଶ୍ ସୁହାଉଥିଲା ସେଥିପାଇଁ । ଏଥିରେ ରଙ୍ଗ ବୋଳିବାର ଦାୟିତ୍ୱ ସେମାନେ ନିଜ ମୁଣ୍ଡକୁ ନେଇ ଯାଇଥିଲେ । ସେମାନେ ଏଇ ତିନିଦିନ ହେବ ସକାଳୁ ରାତି ଯାଏଁ ଖାଲି ହସୁଥିଲେ -






ବଡ଼ ପାଟିରେ କଥାବାର୍ତ୍ତା କରୁଥିଲେ - ଅଯଥାଟାରେ ଗୁଣ୍ଡି ହଉ କି ସଦା ପାନ ବାଣ୍ଟୁଥିଲେ ନିଜର ଚିହ୍ନା ପରିଚିତଙ୍କ ଭିତରେ ।

ସୁଧୀର ସାରଙ୍କର ଘର କିନ୍ତୁ ତଳିତିଳାନ୍ତ ହୋଇ ସାରିଥିଲା । ନିତୁ ସେତେବେଳକୁ ନିହାତି ଛୋଟ ନଥିଲା । ସେଥିପାଇଁ ସେ ବୁଝିପାରିଥିଲା ତା' ବାପାଙ୍କର କୁକାର୍ଯ୍ୟ ବିଷୟରେ । ରୁଚିକୁ ସେ ରକ୍ଷା କରିପାରିଲାନି ବୋଲି ଆତ୍ମଗ୍ଲାନିରୁ ହେଉ କି ଏମିତି ବାପାର ମୁହଁ ଚାହିଁବିନି ବୋଲି ପ୍ରତିଜ୍ଞାରୁ ହେଉ ସେ ସେତେବେଳକୁ ଆତ୍ମହତ୍ୟା କରି ସାରିଥିଲା । ଅଧା କାନ୍ଥି ଉପରେ ଥିବା କୀଟନାଶକକୁ ରାତି ଅଧରେ ଉଠି ଚୁପଚାପ୍ ପିଇଦେଇଥିଲା । ରାତି ପାହିଲା ବେଳକୁ ତା'ଭିତରଟା ବାୟୁଶୂନ୍ୟ ହୋଇଯାଇଥିଲା ସିନା ତା' ଆଖପାଖରେ ପବନରେ ଉଡ଼ି ବୁଲୁଥିଲା ଟୁକୁରା କେଇଟା କାଗଜ । କୋଉଥିରେ ଧାଡ଼ିଏ ଲେଖା ତ କୋଉଠି ଦି'ଧାଡ଼ି । 'ବାପା ତୁମେ ପୁଣି ଏମିତି କଲ ?', 'ରୁଚିଲୋ ତୋତେ ସେଦିନ ମୁଁ ନଇ ପଠାକୁ ଡାକି ନେଇନଥିଲେ ପୃଥିବୀଟା ଏ ପର୍ଯ୍ୟନ୍ତ ସ୍ଥିର ଥାଆନ୍ତା ନା ?', 'ଯିଏ ଆଜନ୍ମ ପିତୃହୀନ ବରଂ ସିଏ କେତେ ଭାଗ୍ୟବାନ' - ଏମିତି ଛୋଟ୍ ଛୋଟ ଧାଡ଼ି - ଯୋଉଥିରୁ ଖାଲି ତା' ବିପର୍ଯ୍ୟସ୍ତ ମନର ଠିକଣା ମିଳୁଥିଲା ।

ସବୁଠୁ ଆଶ୍ଚର୍ଯ୍ୟ ଏତେ ପରେ ବି ସୁଧୀର ସାରଙ୍କ ମୁହଁରୁ ପଦଟେ କଥା ବାହାରୁନଥିଲା - ନା ନିଜକୁ ନିର୍ଦ୍ଦୋଷ ପ୍ରମାଣିତ କରିବାପାଇଁ ନା ନିଜ ଦୋଷକୁ ମାନିବା ପାଇଁ ।

ସେ ଦିନଟା ପ୍ରକୃତରେ ଏମିତି ବିତିଥିଲା । ଗହ୍ମାପୂର୍ଣ୍ଣିମା ପାଇଁ ସ୍କୁଲ୍ ଛୁଟିଥିଲା । ଗାଁ ସ୍କୁଲ୍ ହଷ୍ଟେଲର ସବୁ ପିଲା ପୂର୍ବଦିନରୁ ଘରକୁ ଚାଲିଯାଇଥିଲେ । ହଷ୍ଟେଲ୍ ଦାୟିତ୍ୱରେ ରହୁଥିବା ଆଦିକନ୍ଦ ସାର ବି ବ୍ୟାଗ୍ ସଜାଡୁଥିଲେ - ସେଇଦିନ ଚାଲିଯିବା ପାଇଁ, ସେଇଟା ଶନିବାର ଥିଲା । ଆଦିକନ୍ଦ ସାର ସୋମ, ମଙ୍ଗଳ ଦୁଇଦିନ ଛୁଟି ନେଇଥିଲେ । କିନ୍ତୁ ପିଲାମାନେ ସୋମବାର ଫେରି ଆସିବାର




ଥିଲା । ତେଣୁ ସ୍କୁଲ ହତାକୁ ଲାଗି ରହୁଥିବା ସୁଧୀର ସାରଙ୍କୁ ସେ ଡାକିଥିଲେ ଦାୟିତ୍ୱ ବୁଝେଇ ଦେଇ ଯିବାପାଇଁ ।

ନିତୁ ଆଉ ରୁଚି ଗହ୍ମାପୂର୍ଣ୍ଣମୀର ପିଠା ଖାଇ ସାଇ ବୁଲି ବାହାରିଥିଲେ । ଦୁହେଁ ଭାରି ସାଙ୍ଗ - ଏକା ମାସରେ ଜନ୍ମ ହେଲେ ବି ରୁଚିଟା ସବୁବେଳେ ତା' ପୁଚୁପୁଚୁ ଚେହେରା ପାଇଁ ନିତୁଠୁ ଦି'ତିନିବର୍ଷ ବଡ଼ ଦେଖାଯାଏ । ସାହି ସାରା ବୁଲି ବୁଲି ପିଠା ମିଠା ଖାଇବି ଦି'ଜଣ ଜମା ଥକି ପଡ଼ିନଥିଲେ । ସେତେବେଳକୁ ବାରଟା କି ଗୋଟାଏ ହେବ କି କ'ଣ । ନିର୍ଧୂମ ଖରାଟାରେ ନିତୁ କହିଲା, "ଚାଲ ଯିବା । ନଈ ପଠାକୁ - ପାଣିରେ ପାଦ ବୁଡ଼େଇବା - ବାଉଁଶ ପତର ନଇ ସୁଅରେ ଭସେଇବା - ଦେଖିବୁ କେମିତି ଅଣ୍ଟା ନଚେଇ ନଚେଇ ସେମାନେ ଭାସିଯିବେ ।"

ରୁଚି ରାଜି ହେଉନଥିଲା । ଏଇ ସମୟରେ ନଈ ପଠାରେ କେହି ନଥିବେ । ବ୍ରହ୍ମରାକ୍ଷସ ତା' ବେପାର ମେଲାଇଥିବ ବୋଲି ବୋଉ କୁହେ । କଞ୍ଚା ମୋଡ଼ିଦେବଲୋ ଆମକୁ ।"

ସ୍କୁଲକୁ ଲାଗି ନଈଟା । ସେଥିପାଇଁ ସେଇଟା ନିତୁ ଘରକୁ ବି ଛୁଇଁଛି । ସେ ଫେଁ କରି ହସିପକାଇଲା । କହିଲା, "ମୁଁ ସବୁଦିନ ଘରୁ ଲୁଚି ଏତିକିବେଳେ ଏକା ଏକା ଚାଲି ଆସେ - କାଇଁ କିଛି ତ ହୁଏନି ମୋର... ଚାଲ ।"

ଦି'ଜଣ ଯାକ ଗଲେ - ନଈରେ ପାଦ ବି ବୁଡ଼େଇଲେ । ହେଲେ ଠିକ୍ ସେତିକିବେଳେ ଶୁଭିଲା, "ନିତୁ.. ଏ ନିତୁ ?" ବୋଉର ଡାକ । ନିତୁ ଚଟ୍ କରି ଉଠିପଡ଼ିଲା । କହିଲା, "ତୁ ବସିଥା - ବୋଉ କାହିଁକି ଡାକୁଛି - ମୁଁ ଶୁଣିଦେଇ ଆସେ ।"

ଶୁଣିଦେଇ ଆସିବ ଆଉ କ'ଣ - ବୋଉ ଜବରଦସ୍ତ ବସେଇ ଦେଲା ଭାତ ଖାଇବାକୁ । ବୋଉର ନାଲି ଆଖିଦେଖି ତେର ବର୍ଷର ନିତୁ ଭୁଲିଗଲା - ନଈ






କୂଳରେ ତା'ପାଇଁ କିଏ ଜଣେ ଅନେଇ ବସିଛି । ବାଉଁଶ ପତର ଗୋଟାଉଛି ନଈ ସୁଅରେ ଦି'ଜଣ ମିଶି ଭସେଇବେ ବୋଲି । ଖାଇବାସାରି ନିତୁ ଶୋଇପଡ଼ିଲାବି - ଚାରିଟା ବେଳକୁ ଉଠିଲା ବେଳକୁ ତା' ଚିହ୍ନା ପୃଥିବୀଟା ପୁରା ଓଲଟି ଯାଇଥିଲା ।

ତା' ବାପାଙ୍କୁ ଘେରି ଗର୍ଜନ କରୁଥିଲେ ଗାଁର କିଛି ଲୋକ - କିଏ କିଏ ହାତ ବି ଉଠେଇ ସାରିଥିଲେ । ବାପା ଏତେ ପ୍ରଭାବଶାଳୀ ଅଥଚ ତାଙ୍କ ନିରୀହ ମୁହଁଟା ତାକୁ ବୁଢ଼ୀ ଅସୁରୁଣୀ ଗପର ଦୁର୍ଦ୍ଧର୍ଷ ରାକ୍ଷସଠେ ପରି ଦିଶୁଥିଲା । କାରଣ ସେ ସବୁ ବୁଝି ସାରିଥିଲା । ରୁଚିର ହଲୁନଥିବା ଦେହଟା ରକ୍ତାକ୍ତ ହୋଇ ନଈ ବାଲିରେ ସେ ପର୍ଯ୍ୟନ୍ତ ପଡ଼ିଥିଲା । ତା' ଜାମାପଟା ଚିରି ଯାଇଥିଲା - ବାପାଙ୍କର ଧୋତି ସାର୍ଟ୍ ବି । ସେଇଠି ସେ ନଇଁ ପଡୁଥିଲା ରୁଚିକୁ ପଚାରିବ ବୋଲି - କେମିତି କ'ଣ ହେଲା ? ହେଲେ ଦି'ତିନିଜଣ ତାକୁ ଟେକି ନେଇଗଲେ ଡାକ୍ତରଖାନା । ସେ ଖାଲି ଶୁଣୁଥିଲା ଯେ ରୁଚିର ସଂଜ୍ଞା ଫେରୁନି ।

କେହି ନ କହିଲେ ବି ସେମାନେ ଏକ ଘରକିଆ ହୋଇଯାଇଥିଲେ । ଖୁବ୍ କଷ୍ଟରେ ସୁଧୀର ସାରଙ୍କୁ ଜାମିନ୍ ମିଳିଥିଲା । ସେ କିନ୍ତୁ ଆଉ ଘର ଭିତରୁ ବାହାରୁ ନଥିଲେ । ନିତୁର ମା' ତ ପାଗଳୀ ନ ହୋଇଥିଲେ ଲୋକ ଆଶ୍ଚର୍ଯ୍ୟ ହୋଇଥାନ୍ତେ । ରୁଚିକୁ ବି ନିଜର ଝିଅ ଭଳି ଭାବୁଥିବାରୁ ଏ ଘଟଣା ପରେ କିଛି ବୁଝୁନଥିଲେ । ଯାହାବି କହୁଥିଲେ କେତେବେଳେ କେମିତି, "ଠିକରେ ବୁଝରେ - ତୁମ ସାର୍ କେବେ ଏମିତି କରିବେନି', ନିତୁର ଆତ୍ମହତ୍ୟା ପରେ ସେ ପୁରା ଚୁପ୍ ହୋଇଗଲେ । ଖାଲି କାନ୍ଥକୁ ଅନେଇଲେ ବାଡ଼କୁ ଅନେଇଲେ ସିନା ଲକ୍ଷେ ପଚାରିଲେ ପାଟିରୁ ପଦୁଟିଏ ବାହାରିଲା ନାହିଁ । ଚାରିକାନ୍ଥ ଭିତରେ ଏମିତି କେହି କାହାକୁ ଚିହ୍ନୁନଥିବା ଦି'ଟା ଜୀବ ରହୁଥିଲେ - ସେମାନେ କିନ୍ତୁ ଖାଉଥିଲେ କ'ଣ - ମୋଟୁରୁ ଶୋଉନଥିଲେ କି ନାହିଁ, ସେ ଖବର କାହାକୁ ଜଣା ନଥିଲା ।




ଏପଟେ ହସ୍‌ପିଟାଲରେ ରୁଚିର ଅବସ୍ଥା ଟିକେ ଟିକେ କରି ସୁଧୁରି ଆସୁଥିଲା । ତା'ଚେହେରା ଟିକେ ଉଜ୍ଜ୍ୱଳ ଦେଖା ଯାଉଥିଲା । କ୍ଷୀରରେ ହର୍ଲିକ୍ସ କି ବର୍ଣ୍ଣଭିଟା ମିଶା ଚାମଚଟେ ପାଟି ପାଖରେ ଦେଖାଇଲେ ବେଳେ ବେଳେ ସେ ଆଁ କରି ଦେଉଥିଲା । ଦି'ତିନିଥର ଗାଲରେ ଟିପା ମାରିବା ପରେ ସେତକ ଭିତରକୁ ନେଇ ଯାଉଥିଲା ବି ।

ସ୍କୁଲ୍ ଖୋଲି ସାରିଥିଲା - ହେଲେ ସ୍କୁଲ୍ ଭଳି ନିର୍ଜୀବ ପଦାର୍ଥଟାର ଜୀବନ ବି କୋଉଠି ଅଟକି ଗଲା ପରି ଲାଗୁଥିଲା । ପିଲାମାନେ ସ୍କୁଲ୍ ହଷ୍ଟେଲରେ ଭର୍ତ୍ତି ହୋଇଥିଲେ - ସବୁଦିନ ଭଳି ଘଣ୍ଟା ବାଜୁଥିଲା - ପିଲେ ପ୍ରାର୍ଥନା ପରେ କ୍ଲାସ କୁ ଯାଉଥିଲେ । କିନ୍ତୁ ଆଶ୍ଚର୍ଯ୍ୟ - ଶିକ୍ଷକମାନେ କଦବା କ୍ୱଚିତ ପଢ଼ାଇବାକୁ ଶ୍ରେଣୀରେ ପଶୁଥିଲେ ବି ପିଲାମାନେ ଆଦୌ ପାଟି କରୁନଥିଲେ । ବାରଣ୍ଡା କି ଅଫିସ ନ ହେଲେ କମନ୍ ରୁମ୍ କୋଉଠି ବି ଦଳ ଦଳ ଠିଆ ହୋଇ ଶିକ୍ଷକ, କର୍ମଚାରୀମାନେ ଫୁସଫାସ ହେଉଥିବା ବେଳେ ପିଲାମାନଙ୍କର ଶ୍ରେଣୀ ଭିତରେ ବି ସେଇ ସମାନ ଅବସ୍ଥା ଥିଲା ।

ସୁଧୀର ସାର ଜାମିନ ପାଇଲା ପରେ ଦିନେ ସ୍କୁଲ୍ ଆସିଥିଲେ । ସେଠି ସେ କଣ ଅନୁଭବ କଲେ କି ତାଙ୍କୁ କିଏ କଣ କହିଲା କେଜାଣି, ଚାରିଟା ପର୍ଯ୍ୟନ୍ତ ରହିପାରିଲେ ନାହିଁ ସ୍କୁଲରେ । ଦରଖାସ୍ତଟିଏ ବି ନଦେଇ ସେବେଠୁ ଘରେ ଅଛନ୍ତି ଯେ ଅଛନ୍ତି ।

ସାତଦିନ - ପୁରା ସାତଦିନ ପରେ ଦିନେ ରୁଚି ଟିକେ ସୁସ୍ଥ ହେଲା । ଭୋକ ଲାଗୁଛି କହି ଦି'ଟା ବିସ୍କୁଟ୍ ମାଗି ନିଜେ ନିଜେ ଖାଇଲା । ମା'କୁ ପଚାରିଲା, "ତୁମେ ଦି'ଜଣ ତ ଏଠି - ଘରେ ବବଲୁ କେମିତି ଏକା ଅଛି ?"






ଆଉ ଦି'ଚାରି ଦିନପରେ ଡାକ୍ତର ଅନୁମତି ଦେଲେ ପୋଲିସକୁ ତାକୁ କିଛି ପଚାରିବା ପାଇଁ । ପୋଲିସ ଇନ୍‌ସ୍ପେକ୍ଟର ବାବୁ ଭାରି କମ୍ ବୟସର ଥିଲେ ସୁଦ୍ଧା - ଖୁବ୍ ବୁଝିବାର ଥିଲେ । ଧୀରେ ସୁସ୍ଥେ ସେ ପ୍ରଶ୍ନ ପଚାରିଲେ - ଖୁବ୍ ସନ୍ତର୍ପଣରେ ଉତ୍ତର ଲେଖିବାକୁ ପାହ ଲୋକକୁ ଇଶାରା ବି ଦେଲେ ।

ରୁଚିର ଦୁର୍ବଳତା ପୁରା କଟିନଥିଲା । ସେଥିପାଇଁ ସେ ବି ରହି ରହି ଖୁବ୍ ଧିରେ ଧିରେ ସବୁ ପ୍ରଶ୍ନର ଉତ୍ତର ଦେଉଥିଲା । ହେଲେ ସେଇ ଶୀତଳ ଭଣ୍ଡାର ଭିତରେ ବି ଏମିତି ବିମାଟେ ସେ ସାଇତି ଥିଲା ବୋଲି କିଏ ଜାଣିଥିଲା ? ସେ ବିସ୍ଫୋରଣରେ ଛିନ୍‌ଛତ୍ର ହୋଇଗଲା ଏ ପର୍ଯ୍ୟନ୍ତ ସଜଡ଼ା ଓ ସାଇତା ହୋଇଥିବା ପୁରା କାହାଣୀଟା ।

ତା' କଥା ଅନୁସାରେ ସେଦିନ ନଈକୂଳରେ ନିତୁକୁ ଅପେକ୍ଷା କରି ବସି ବସି ତାକୁ ଖୁବ୍ ବିରକ୍ତ ଲାଗିଲା । ଦେଖାହେଲେ ଥରେ ବି ନିତୁ ସହ କଥା ହବନି ଭାବି ସେ ଉଠିବାକୁ ଯାଉଛି - ତା' ପଛଆଡୁ କିଏ ଜଣେ ଆସି ଆଖିବନ୍ଦ କରିଦେଲା । ନିତୁ ବୋଲି ନିଶ୍ଚିତ ଥିଲେ ବି ରୁଚି ଜମା ଛାଟିପିଟି ହେଲାନି । ସେ ତ ନିର୍ଣ୍ଣୟ ନେଇ ସାରିଥିଲା, ନିତୁ ସହ ଏ ଜନ୍ମ ସରିଲେ ବି ସାଙ୍ଗ ହବନି - ଛାଟିପିଟି ହେଇ ଫୁଲେଇ ହୋଇଥାନ୍ତା କାହିଁକି ? ବରଂ ଚୁପ୍ ହୋଇ ସେମିତି ବସିଲା । ବନ୍ଦ କରୁ ଆଖି ସେ, କେତେ ସମୟ କରିବ - ବଳେ ତ ଛାଡ଼ିବ । ତା' ମୁହଁକୁ ସେତେବେଳେ ଥରେ ବି ନ ଅନେଇ ସେ ଘରକୁ ଫେରିଯିବ ।

ହଠାତ୍ ତାକୁ ଲାଗିଲା ନିତୁର ହାତ ଗୁଡ଼ାକ ଏତେ ଟାଆଁସା ନୁହେଁ କି ତା'ର ନିଃଶ୍ୱାସ ଏତେ ଗରମ ନୁହେଁ । ଫଁ ଫଁ ସାପ ଭଳି ନିଶ୍ୱାସ ତ ସେ ଜମା ନିଏନି - କେଜାଣି ଶୋଇଲା ବେଳେ ନେଉଥିବ ପରା । ରୁଚି ଉଠିବାକୁ ଯାଉଛି ହଠାତ୍ ଉଡ଼ିଗଲା ପବନରେ । କିଏ ଜଣେ ଶୂନ୍ୟେ ଶୂନ୍ୟେ ତାକୁ ଟେକିନେଇ ଥୋଇଦେଲା ଗୋଟିଏ ବୁଦା ସେପଟରେ । ସେତିକିବେଳେ ଆଖି ଖୋଲି ସେ ଦେଖିଥିଲା






ସବୁଦିନ ଶ୍ରେଣୀରେ ନୀତିଶିକ୍ଷା ଦେଉଥିବା ଆଦିକନ୍ଦ ସାରଙ୍କୁ ଅଭଦ୍ର ଭଳି... । ଓଃ ! ତା' ପାଟିରେ ଗେଞ୍ଜା ହୋଇଥିଲା ପୁଳାଏ ଗାମୁଛା । ସେ ପାଟି କରିପାରୁନଥିଲା - ଅଥଚ ଯନ୍ତ୍ରଣାରେ ଟିକ୍ ଟିକ୍ କଟିଯାଉଥିଲା ତା' ଦେହର ପ୍ରତିଟି ଶିରାପ୍ରଶିରା । ତା' ଛୋଟିଆ ଦେହଟା ସତେକି ଘୋରି ହୋଇଯାଉଥିଲା ଆଦିକନ୍ଦ ସାରଙ୍କ କାଳିଆ, ପେଟୁଆ, ଟାଣୁଆ ଦେହ ତଳେ ।

କେମିତି କେଜାଣି ପାଟିରୁ ଗାମୁଛାଟା ଖସିଗଲା ପରେ ଆର୍ତ୍ତ ଚିତ୍କାରଟିଏ କାଟି ଦେଇଥିଲା ଖରାବେଳିଆ ନଈକୂଳର ଶୂନଶାନ ପବନକୁ । ସେହି ଚିତ୍କାର ଶୁଣି ବୋଧେ ନଈ ପାଖକୁ ଆସିଥିବା ସୁଧୀର ସାର ସେଠି ପହଞ୍ଚିଗଲେ । "ଆରେ... ଆରେ... ଇଏ କଣ ?" କହୁ କହୁ ସେ ଚଣ୍ଡାଳ ଆଦିକନ୍ଦକୁ "ଆଉ ତାକୁ ସାର୍ କହି ସମ୍ମାନ ଦେବାର ଇଚ୍ଛା ରୁଚିର ନଥିଲା" ଟାଣି ଓଟାରି ଛିଣ୍ଡେଇ ଦେଲା ସୁଧୀର ସାରଙ୍କ ଧୋତି ସାର୍ଟ୍ । ପାଗଳ ଭଳି ଚିତ୍କାର କଲା, "ଦୌଡ଼ି ଆସରେ । କିଏ କୋଉଠି ଅଛ ?" ପାଟି ଶୁଣି ରୁଣ୍ଡ ହୋଇଗଲେ ଲୋକ ସେଠି । ହାତଠାରି ଆଦିକନ୍ଦ ରୁଚିକୁ ଦେଖାଉଥିଲା ପୁଣି ସୁଧୀର ସାରଙ୍କୁ । କିଛି ଲୋକ ପିଟିବା ଆରମ୍ଭ କରିଦେଇଥିଲେ । ରୁଚି ହାତଟେକି ସେମାନଙ୍କୁ ମନା କରିବାକୁ ଚେଷ୍ଟା କରୁଥିଲା କାରଣ ଉଠିବାର ଶକ୍ତି ସେ ହରାଇ ସାରିଥିଲା ସେତେବେଳକୁ । ହେଲେ ତା କଥା କେହି ଶୁଣୁନଥିଲେ ।

ବାସ୍ - ତା ପରେ କଣ ହେଲା ସେ କିଛି ଜାଣେନି । ଏତେ ଗୁଡ଼ାଏ ଦିନ ସେ ଜାଣିଲାନି ତା' ପାଖ ଆଖ ପୃଥିବୀର କୋଉଠି ଗଛରୁ ପତ୍ରଟେ ଖସିଲା କି ସମୁଦ୍ରରେ ସୁନାମୀ ଆସିଲା । ତା'ରି ସୁଯୋଗ ନେଇ ପୁରା ଧରିତ୍ରୀଟା ଓଲଟ ପାଲଟ ହୋଇଥିଲା, ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ । ବର୍ତ୍ତମାନ ତା'ର ଏ ବୟାନ ପୁଣିଥରେ ବିପର୍ଯ୍ୟସ୍ତ ପୃଥିବୀଟାକୁ ସଜାଡ଼ି ପକେଇବା କଥା । କିନ୍ତୁ ସେମିତି କେମିତି ହେବ ? ହୋଇପାରିବ କି ? ଖାଲି ଏତିକି ହେଲା ସେ ଦିନରୁ ଆଜିଯାଏ






ବସନ୍ତ ହେଇଛି କହି ଛୁଟିରେ ଥିବା ଆଦିକନ୍ଦକୁ ପୋଲିସ ଗିରଫ କଲା ତାଙ୍କ ଘର ପାଳଗଦା ପଛରୁ ।

ଗାଁ ସାରା ସମସ୍ତେ ପସ୍ତଉଥିଲେ, "ଆଃ, କିଛି ନ ବୁଝି ସୁଝି ସୁଧୀର ସାରଙ୍କ ଭଳି ଗୋଟାଏ ଲୋକକୁ .... ।" ଶେଷରେ ଦିନେ ସନ୍ଧ୍ୟାରେ ସେମାନେ ଏକାଠି ହେଲେ । କାହାରି ମୁହଁ ନଥିଲା ଏକା ଯାଇ କ୍ଷମା ଭଳି ସହଜ ଜିନିଷଟେ ମାଗିଦେବା ପାଇଁ । ସେଥିପାଇଁ ସମସ୍ତେ ସାଙ୍ଗହୋଇ ଗଲେ - ସୁଧୀର ସାରଙ୍କର ପିଣ୍ଡାତଳେ ଠିଆ ହେଲେ । ସାର୍ ପିଣ୍ଡା ଉପରେ ବସିଥିଲେ ଗୋଡ଼ ଲମ୍ବେଇ ଛିଣ୍ଡା ସପଟେ ଉପରେ । ଆକାଶର କୋଉ ତାରାକୁ ଖୋଜୁଥିଲେ କେଜାଣି ଜମା ଜାଣିପାରୁନଥିଲେ, ତାଙ୍କ ଗୋଡ଼ତଳେ ଆଜି ଏତେ ଲୋକ ଭିଡ଼ ହୋଇଛନ୍ତି ବୋଲି । ଶେଷରେ ଗାଁର ଆଗୁଆ ଟୋକା ସୁଦର୍ଶନ - ଯିଏ ଦି'ଟା ଖଣ୍ଡେ ଖବର କାଗଜର ସ୍ଥାନୀୟ ପ୍ରତିନିଧିଅ ଅଛି - ସେ ସାହାସ କରି ଡାକିଲା, "ସାର୍" ।

ସାର୍ ଅନେଇଲେ । ଏତେ ଭିଡ଼ ଦେଖିବା ସତ୍ତ୍ୱେ ନା ତାଙ୍କ ମୁହଁରେ ଆଶ୍ଚର୍ଯ୍ୟର ଚିହ୍ନଥିଲା ନା କୌଣସି ଭାବ । କିଛି ପଚାରୁନଥିଲେ ସେ - ଖାଲି ଚାହିଁ ରହିଲେ ।

ସୁଦର୍ଶନ କହିଲା, "ସାର୍, ରୁଚିର ଚେତା ଆସିଛି ଆଜି । ସବୁ ସତ କହିଲା ସେ । ଆମେ ତ ଜାଣିନଥିଲୁ । କ୍ଷମା କରି ଦିଅନ୍ତୁ । ଭୁଲିଯାଆନ୍ତୁ ସବୁ ପଛ କଥା । କାଲିଠୁ ସ୍କୁଲ୍ ଚାଲନ୍ତୁ ।"

ସାର ଟିକେ ବି ହଲିଲେ ନାହିଁ । ସେଇଠି ଥାଇ କହିଲେ, "ଭୁଲି ଯିବାକୁ କହୁଛ ? ଠିକ୍ ଅଛି - ଭୁଲିଯିବି ସବୁ । ହେଲେ ଭୁଲିଗଲେ କ'ଣ ସବୁ ଠିକ୍ ହୋଇଯିବ ? ଫେରି ଆସିବ ଗୋଟାଏ ମିଛକୁ ସତ ଭାବି ଅଭିମାନରେ ଶୋଇଯାଇଥିବା ମୋ ନିତୁ ? ମୋ ଗେହ୍ଲେଇ ନିତୁ ? ତା' ମା' କ'ଣ ପୁଣି ଠିକ୍






ହୋଇଯିବ - ଏତେ ବଡ଼ ଖବରଟା ଶୁଣି ? " ବାଷ୍ପରୁଦ୍ଧ ହୋଇ ଉଠିଥିଲେ ସାର୍ । କଣ୍ଠଟା ବନ୍ଦ ହେବାପରି ଲାଗୁଥିଲା ଆଖିରୁ ଧାରେ ଲୁହ ବହିଗଲା । ଗଳା ସଫା କରି କହିଲେ, "ଆଉ ମୋ ସମ୍ମାନ ? ଯାହା ମୁହୂର୍ତ୍ତକରେ ଧୂଳି ହୋଇଗଲା ? ତୁମେ କେଇଜଣ ସତ ଜାଣିଲ ସିନା - ସେଦିନ ପରା ନାଳ, ବିଲ, ଗହୀର ସବୁ ଝଟ୍‌କାଟିରେ ଡେଇଁ ପଡ଼ିଲା ସେଇ ପଚା ପଚା ଗନ୍ଧାଉଥିବା ମିଛ କଥାଟା ? ଫେରେଇ ସାଉଁଟି ଆଣି ପାରିବ ତାକୁ ସବୁ କଣରୁ ? ସନ୍ଧିରୁ ?" ସୁଦର୍ଶନ ଆଡ଼କୁ ଚାହିଁ କହିଲେ, "ତୁ ପରା କୋଉ ଖବର କାଗଜରେ ଅଛୁରେ ବାପା ? ପାରିବୁ ? ସେଦିନ ଯେମିତି ସାମ୍ନା ପୃଷ୍ଠାରେ ଯେଡ଼େ ଯେଡ଼େ ଅକ୍ଷରରେ ନାଲି କାଳିରେ ମୋ' ନାଁ ବଦନାମ କରି ଖବର ଛାପିଥିଲୁ - ସେତିକି ଜୋର୍ ଦେଇ ଦେଇ ଆଜି ସତ କଥାଟା ଲେଖି ପାରିବୁ ? ସେଦିନ ଟେଲିଭିଜନରେ ଯେମିତି ଚଟାପଟ୍ ଖବର ଦେଖାଇବା ଆଳରେ ମୋ ସମ୍ପୂର୍ଣ୍ଣ ପରିବାରକୁ ସର୍ବସମ୍ମୁଖରେ ଲଜ୍ଜିତ କରି ଦେଖାଉଥିଲ ବାରମ୍ବାର - ପାରିବୁ ଆଜିର ଏ ଖବର ଦେଖେଇ ?' ହସିଲେ ବୋଧେ ସାର୍ । ଓଠଟା ଟିକେ ମେଲିଗଲା ତ... କହିଲେ, "ନା, ପାରିବୁନି । ତୁମମାନଙ୍କୁ ଗନ୍ଧ ଭରିଆସେରେ ବାପା । ବାସ୍ନା ବିଛେଇ ଆସେନି ।... ମୁଁ ଆଉ ସ୍କୁଲକୁ ଯିବିନି । ତୁମେ ସବୁ ଏବେ ଯାଅ ।"

ପୁରା ଜନସମୁଦ୍ରଟା ଏମିତି ଚୁପ୍, ନିସ୍ତବ୍ଧ ହୋଇ ଦଣ୍ଡାୟମାନ ହୋଇଥିଲା ଯେମିତି ସେଠି ସେଦିନ ଜଣେ ବି ଲୋକ ନାହାନ୍ତି - କେହି ନୁହେଁ ।

ଯୋଡ଼ା ମହିଳା ମହାବିଦ୍ୟାଳୟ, ବନେଇକଳା

ଯୋଡ଼ା, କେନ୍ଦୁଝର - ୭୫୮୦୩୮

ଦୂରଭାଷ - ୯୪୩୭୫୩୪୬୬୯୨

ଇମେଲ୍ - madhumita.m@gmail.com




# ନିର୍ଜନତାର ଦୁଇଦଣ୍ଡି



ସୁଶାନ୍ତ ପୁରୋହିତ

( ଶୁଣିଥିବା ଏକ ପ୍ରାଚୀନ ଗଳ୍ପର କାହାଣୀ ଉପରେ ପର୍ଯ୍ୟବେଶିତ )

ଜନ, ଷ୍ଟୁଆର୍ଟ୍, ମାଇକେଲ ଓ ବାସିଲ ଏମାନେ ଚାରି ଘନିଷ୍ଠ ବନ୍ଧୁ । ସେମାନେ ସମ୍ଭ୍ରାନ୍ତ ଇଂଲଣ୍ଡର ଏକ କ୍ଲବର ସଦସ୍ୟ ଓ ସମାଜରେ ପ୍ରତିଷ୍ଠିତ । ଜନ, ଷ୍ଟୁଆର୍ଟ ଓ ମାଇକେଲ ବିବାହିତ ଓ ବ୍ୟବସାୟ ସଂପ୍ରଦାୟର ହୋଇଥିବା ବେଳେ ବାସିଲ ଜଣେ ଲେଖକ । ୩୦ ବର୍ଷୀୟ ବାସିଲ ସେମାନଙ୍କ ମଧ୍ୟରୁ ସର୍ବକନିଷ୍ଠ ହେଇଥିଲେ ମଧ୍ୟ ଜଣେ ଦାର୍ଶନିକ ମନୋଭାବାପନ୍ନ ଲୋକ ତଥା ଜଣେ ସୁବକ୍ତା । ବାକି ତିନି ବନ୍ଧୁ ବିବାହିତ ଓ ପରିବାର ସହିତ ରହୁଥିବା ବେଳେ ବାସିଲ କିନ୍ତୁ ଅବିବାହିତ ଓ ମୁଖ୍ୟତଃ କ୍ଲବର ଅତିଥିଭବନ ବା ହୋଟେଲରେ ରହନ୍ତି ଓ ଅନେକ ସମୟରେ ଦେଶ ବିଦେଶର ବିଭିନ୍ନ ସହରକୁ ଭ୍ରମଣରେ ଚାଲିଯାଇଥାନ୍ତି ।

ସବୁଦିନ ପରି ସେଦିନ ମଧ୍ୟ ତାସର ଆସର ମଧ୍ୟରେ ଚାରି ବନ୍ଧୁଙ୍କ ଭିତରେ ଆଲୋଚନା ଚାଲିଥାଏ । ହଠାତ୍ ଜନ କହିଲେ ଜଣେ ମଣିଷ ଯେତେ ଆରାମରେ ରହିଲେ ମଧ୍ୟ ତାହା ପାଇଁ ଯଦି ସ୍ୱାଧୀନତା ନାହିଁ ସେ ବେଶିଦିନ ଖୁସିରେ ରହିପାରିବନି । ମାଇକେଲ ସହମତ ହେଇ କହିଲେ ମଣିଷ ଏକାକୀ କାହାକୁ ନ ଦେଖି ଅବଶ୍ୟ ଗୋଟିଏ ସପ୍ତାହ ରହିପାରିବ ଯଦି ତାହାର ବାହାରକୁ ଆସିବାର ସୁଯୋଗ ଥାଏ । ଯେଉଁ ମାନଙ୍କୁ ନିର୍ଜନ ଦ୍ୱୀପରେ ନିର୍ବାସନ ଦିଆ ଯାଉଥିଲା ସେମାନଙ୍କ ଜୀବନ ନିଶ୍ଚୟ ଦୁର୍ବିସହ






ରହୁଥିବ । ଷ୍ଟୁଆର୍ଟ ମଧ୍ୟ ସେମାନଙ୍କ ସହ ଏକମତ ହେଲେ । କିନ୍ତୁ ତରୁଣ ବାସିଲଙ୍କ ମତ ଭିନ୍ନ । ତାଙ୍କ ମତରେ ମଣିଷ ଖୁସି ବା ଦୁଖୀ ରହିବା ସବୁ ନିଜ ମନର ଏକ ଅବସ୍ଥା । ନିଜ ମନକୁ ଯିଏ ତାଲିମ ଦେଇ ପାରିବ ସେ ଯେ କୌଣସି ସ୍ଥିତିରେ ଶାନ୍ତିର ସହ ରହିଯିବ । ଏହି ବିଷୟ ନେଇ ବନ୍ଧୁ ମାନଙ୍କ ମଧ୍ୟରେ ବହୁତ ଆଲୋଚନା ଓ ଯୁକ୍ତି ଚାଲିଲା । ବାସିଲ କହିଲେ ତାଙ୍କୁ ଯଦି ସୁଯୋଗ ମିଳେ ସେ ଏକାକୀ କାହାକୁ ନ ଭେଟି ନିର୍ଜନତାରେ ୨୦ ବର୍ଷ ମଧ୍ୟ ବିତେଇ ଦେବେ । "ନା, ଏହା କଦାପି ସମ୍ଭବ ହେବ ନାହିଁ ଯଦି ତମେ ଜାଣିଥିବ ଯେ ତମେ ଚାହିଁଲେ ବାହାରକୁ ଆସି ପାରିବ" ମାଇକେଲ କହିଲେ ।

"ଜଣେ ବେଶି ହେଲେ ୨ ମାସ ରହିଯାଇପାରେ ତାହାଠାରୁ ବେଶି ଅଧିକ ନୁହେଁ" ଜନ୍ ତାଙ୍କ ମତ ଦେଲ । "ବାଧ୍ୟ ହୋଇ ନିର୍ଜନବାସ ଅଲଗା କଥା କିନ୍ତୁ ଜଣେ ନିଜେ ଚାହିଁଲେ ବନ୍ଦୀ ଭାବରେ ବେଶି ଦିନ ରହିପାରିବନି", ସେ ଆହୁରି କହିଲେ । ଷ୍ଟୁଆର୍ଟ ଜଣେ ବାଜି ଲଗେଇବା ଉସ୍ତାଦ ବ୍ୟକ୍ତି । ସେ କହିଲେ ଜଣେ ଯଦି ୧୦ ବର୍ଷ ନିର୍ଜନ ଘରେ ନିଜ ଇଚ୍ଛାରେ ସବୁ ସୁବିଧା ଥାଇ ରହିଗଲା ତେବେ ସେ ତାଙ୍କର ସମ୍ପତ୍ତିର ଅଧା ଦେଇଦେବେ । ମାଇକେଲ ମଧ୍ୟ କହିଲେ ସେ ଏପରି ଏକ ବ୍ୟକ୍ତିକୁ ନିଜର ସହରତଳି ଅଞ୍ଚଳର ବଙ୍ଗଳାଟି ଦେଇଦେବେ, ଯଦି ବାଜି ଲଗାଯାଏ । ଷ୍ଟୁଆର୍ଟ ମଧ୍ୟ ତାଙ୍କର ଫାର୍ମ ହାଉସକୁ ବାଜି ଲଗେଇଦେବେ ବୋଲି କହିଲେ । ବାସିଲ କହିଲେ "ଠିକ ଅଛି, ମୁଁ ବାଜି ଗ୍ରହଣ କରିବାକୁ ପ୍ରସ୍ତୁତ ଅଛି । ତେବେ ୧୦ ବର୍ଷ ପାଇଁ ନୁହେଁ, ପୁରା ୨୦ ବର୍ଷ ପାଇଁ । ଯଦି ୨୦ ବର୍ଷରୁ ଘଣ୍ଟାଏ ବି ଆଗରୁ ମୁଁ ବାହାରି ଯାଏ ତେବେ ମୁଁ ମୋର ବ୍ୟାଙ୍କରେ ସଞ୍ଚିତ ସମସ୍ତ ଅର୍ଥ ଦେଇଦେବି ।"

ସମସ୍ତେ ତାଜୁବ ହେଇଗଲେ । ଜନ କହିଲେ "ବନ୍ଧୁ, ତୁମେ ଏବେ ଜିଦରେ ଏକଥା କହୁଛ । ତମେ ଯଦି ୨୦ ବର୍ଷ ନିର୍ଜନତାରେ ବନ୍ଦୀ ରହିଯିବ, ତୁମର






ଜୀବନର ଶ୍ରେଷ୍ଠ ସମୟ ୨୦ ବର୍ଷ ହରେଇବ ଆଉ ଏହି ସମୟରେ ତମେ ଏକାକୀ ପାଗଳ ହେଇଯିବ ।"

କିନ୍ତୁ ବାସିଲ ନିଜ ଜିଦରେ ଅଟଳ ରହିଲେ । ତେଣୁ ୪ ବନ୍ଧୁଙ୍କ ମଧ୍ୟରେ ଏଥିପାଇଁ ବିସ୍ତୃତ ଭାବରେ ଆଲୋଚନା ହେଇ ରାଜିନାମା କରାଗଲା । ସ୍ଥିର ହେଲା ଷ୍ଟୁଆର୍ଟଙ୍କ ଫାର୍ମହାଉସକୁ ଏଥିପାଇଁ ବ୍ୟବହାର କାରାଯିବ । ଘର ଚାରିଦିଗରୁ ବାହାରକୁ ଦେଖା ନ ଯିବାର ବ୍ୟବସ୍ଥା କରାଯିବ । ବାହାରୁ ପ୍ରାଚୀରରେ ଥିବା ଏକ ଝରକା ଦେଇ ବାସିଲ ଯାହା ଚାହିଁବେ ଯୋଗେଇ ଦିଆଯିବ । ସେ କାହାରି ସଙ୍ଗେ ଯୋଗାଯୋଗ କରିବେ ନାହିଁ । ଯାହା ଦରକାର ସେ ନୋଟ ଲେଖି ସେଇ ଝରକା ବାଟେ ଗଳେଇ ଦେବେ । ଘର ବାହାରେ ଥିବା ପ୍ରହରୀ ତାହା ଯୋଗାଡ଼ କରି ଆଣି ଝରକା ବାଟେ ରଖିବ । ବାସିଲ ବାହାର ଦୁନିଆ ସହ ଆଉ କୌଣସି ସମ୍ପର୍କ ରଖିବେ ନାହିଁ, କାହାକୁ ଦେଖିବେ ନାହିଁ, କାହା ସହ କଥା ହେବେ ନାହିଁ, କୌଣସି ଘଟଣା ଜାଣିବେ ନାହିଁ, ବର୍ତ୍ତମାନର ଖବର କାଗଜ ବା ରେଡ଼ିଓ ବ୍ୟବହାର କରିବେ ନାହିଁ । ସେ ଏବେକାର ଖବର କାଗଜ ଓ ରେଡ଼ିଓ ଛଡ଼ା ବାକି ଯାହା ଚାହିଁବେ ତାଙ୍କୁ ଦିଆଯିବ । ସେ କାହା ପାଖରୁ ଚିଠି ପାଇବେନି । ଏହି ସର୍ତ ସହ ୨୦ ବର୍ଷ ଯାଏଁ ଏହି ଘର ଭିତରେ ହିଁ ରହିବେ । ଯଦି ଚାହିଁବେ ସେ ବାଜି ସମର୍ପଣ କରି ନିଜେ ବାହାରି ଆସିବେ ଓ ଏହା ଦ୍ୱାରା ତାଙ୍କର ବ୍ୟାଙ୍କରେ ଥିବା ଜମା ଟଙ୍କା ତାଙ୍କର ବନ୍ଧୁ ମାନଙ୍କୁ ଦେଇଦେବେ । ଯଦି ପୁରା ୨୦ ବର୍ଷ ରହନ୍ତି, ଠିକ ୨୦ ବର୍ଷ ବାର୍ଷିକୀରେ ବାକି ୩ ବନ୍ଧୁ ଆସିବେ ଓ ତାଙ୍କୁ ଷ୍ଟୁଆର୍ଟଙ୍କ ସେଇ ଫାର୍ମ ଗୃହ, ମାଇକେଲଙ୍କ ବଙ୍ଗଳା ଓ ଜନ୍ ତାଙ୍କ ବ୍ୟାଙ୍କ ବାଲାନ୍ସରୁ ୧ ଲକ୍ଷ ଡଲାର ଦେବେ ।

ସବୁ ଠିକ ହେଲା ପରେ ନିର୍ଦ୍ଧିଷ୍ଟ ଦିନ ଚାରି ବନ୍ଧୁ ଫାର୍ମ ଘର ସାମ୍ନାରେ ମିଳିତ ହେଲେ । ବାସିଲଙ୍କୁ ବିଦାୟ ଦେଇ ଘର ଭିତରକୁ ପଠେଇ ଦେଲେ ।






ବନ୍ଦୀ ଜୀବନର ପ୍ରଥମ ଛଅ ମାସ ଯାଏ ବାସିଲ ପ୍ରତ୍ୟହ ସହରରେ ମିଳୁଥିବା ସବୁଠାରୁ ଦାମିକା ହୋଟେଲର ଖାଦ୍ୟ, ପାନୀୟ ମଗେଇଲେ । ଦାମୀ ସେଣ୍ଟ ଓ ଅନ୍ୟ ବିଳାସ ବ୍ୟାସନ ସାମଗ୍ରୀ ମଧ୍ୟ ତାଙ୍କ ତାଲିକାରେ ସବୁଦିନେ ରହୁଥିଲା । ସବୁକୁ ରୀତିମତ ଜଗୁଆଳି ହାତରେ ପ୍ରାଚୀରରେ ଥିବା ଛୋଟ ଦୁଆର ମଧ୍ୟରେ ରଖିଦିଆ ଯାଉଥିଲା । ଏହା ସହିତ ନୂଆ ବାହାରିଥିବା ଗୀତ ସବୁର ରେକର୍ଡ ସବୁ ମଧ୍ୟ ମଗାଉ ଥିଲେ । ତାଙ୍କ ଘର ମଧ୍ୟରୁ ଅନେକ ସମୟରେ ଜୋର ଆବାଜରେ ସେଇ ରେକର୍ଡ ସବୁ ବାଜୁ ଥିବାର ଧ୍ୱନି ଭାସି ଆସୁଥିଲା ବିଳମ୍ବିତ ରାତି ଯାଏ । ଜଣା ଯାଉଥିଲା ବାସିଲ ଜୀବନକୁ ଏକାକୀ ହେଲେ ବି ଜୀବନକୁ ଖୁବ ଉପଭୋଗ କରୁଛନ୍ତି ।

କିନ୍ତୁ ପ୍ରାୟ ବର୍ଷେ ପରେ ତାଙ୍କର ରୁଚିରେ ହଠାତ ପରିବର୍ତନ ଦେଖା ଦେଲା । ସେ ଆଉ ବେଶି ତେଲ ମସଲା ଯୁକ୍ତ ଖାଦ୍ୟ ନ ମଗେଇ ଟିକିଏ ସାଦା ଖାଦ୍ୟ ପାଇଁ ଲେଖିଲେ । ଗୀତ ରେକର୍ଡ ନ ମଗେଇ ଗୀଟାରଟିଏ ଓ ଗୀତ ବଜେଇ ଶିଖିବା ବହି ମାନ ମଗେଇଲେ । ଏହା ପରେ ସେ ଆହୁରି ଅନେକ ପ୍ରକାର ବାଦ୍ୟଯନ୍ତ୍ର ମଗେଇ ସେ ସବୁକୁ ଶିଖିଲେ । ବିଳମ୍ବିତି ରାତି ଯାଏ ତାଙ୍କ ଘରୁ ଗୀତାର ବାଜୁଥିବାର ସ୍ୱର ଆସିଲା । ଏହା ପରେ ସେ ଆହୁରି ଅନେକ ପ୍ରକାର ବାଦ୍ୟଯନ୍ତ୍ର ପାଇଁ ଆଦେଶ ଦେଲେ । ତେବେ ଏହା ୨ ବର୍ଷ  ଯାଏଁ ଚାଲିଲା ପରେ ପୁଣି ତାଙ୍କ ରୁଚିରେ କିଛି ପରିବର୍ତନ ଦେଖାଗଲା । ସେ ଏଥର ବହି ମଗେଇଲେ । ସବୁ ପ୍ରକାର ଉପନ୍ୟାସ, ନାଟକ ଓ ଜନପ୍ରିୟ ବହି ପଠେଇବା ପାଇଁ ପ୍ରତ୍ୟହ ଲେଖିଲେ । ଏହା ସହ ଲେଖନ ଉପକରଣ ମଧ୍ୟ ମଗେଇଲେ ।  ତାଙ୍କ ଘରେ ଏବେ ନୀରବତା । ବିଳମ୍ବ ରାତି ଯାଏ କିନ୍ତୁ ତାଙ୍କ କୋଠରି ଆଲୁଅ ଜଳୁଥିବାର ଦେଖାଗଲା । ସେ ବିଶ୍ୱର ସବୁ ବଡ଼ ଲେଖକଙ୍କ ଉପନ୍ୟାସ, ନାଟକ, କବିତା, ଅର୍ଥନୀତି, ରାଜନୀତି ଉପରେ ପୁସ୍ତକ ସବୁ ପାଇଁ ଅନୁରୋଧ ପଠେଇ ସେ ସବୁକୁ ଅଧ୍ୟୟନ କଲେ । ଏହି କ୍ରମ ତାଙ୍କର ପ୍ରାୟ ୬ ବର୍ଷ ଧରି ଚାଲିଲା ।ଏହି  ସମୟ






ମଧ୍ୟରେ ବାସିଲ ଅତ୍ୟନ୍ତ ମନଯୋଗ ସହ ନିଜ ଦେଶର ଅର୍ଥନୀତି ସହ ବିଶ୍ୱର ଅନ୍ୟ ଦେଶମାନଙ୍କ ଅର୍ଥନୀତି ବିଷୟରେ ବିସ୍ତୃତ ଭାବରେ ପଢ଼ିଲେ । ରାଜନୀତି ଉପରେ ମଧ୍ୟ ସେ ଗଭୀର ଭାବରେ ଅନୁଧ୍ୟାନ କଲେ ।

ତାହା ପରେ ହଠାତ ଦିନେ ତାଙ୍କର ମଗେଇବା ଶୈଳୀରେ ପରିବର୍ତ୍ତନ ଦେଖା ଦେଲା । ସେ ରନ୍ଧା ହେଇଥିବା ଖାଦ୍ୟ ବଦଳରେ ନିଜେ ପ୍ରସ୍ତୁତ କରିବାକୁ ଖାଦ୍ୟ ଉପକରଣ ସହ ବିଭିନ୍ନ ଦ୍ରବ୍ୟ ପାଇଁ ଅନୁରୋଧ କରିବା ସହ ବିଭିନ୍ନ ପ୍ରକାର ଖାଦ୍ୟ  ରନ୍ଧନ ପୁସ୍ତକ ମଗେଇଲେ । ରନ୍ଧନ କଳାରେ ସେ ବର୍ଷେ କାଳ ବିଭିନ୍ନ ଗବେଷଣା କରିବା ସହ ଏଥିରେ ଜଣେ ପ୍ରବୀଣ ହେଇଗଲେ । ଏହି ପରି ସେ କିଛି ବର୍ଷ ମଧ୍ୟରେ ସେ ଅନେକ ବିଷୟରେ ନିଜେ ଶିଖି ବିଶାରଦ ହେଇଗଲେ । ଏହି ଦୀର୍ଘ ସମୟ ମଧ୍ୟରେ ସେ ବାହାର ଦୁନିଆ ବାବଦରେ ସର୍ତ୍ତ ଅନୁସାରେ କିଛି ବି ଖବର ରଖୁ ନଥିଲେ, ନା ଖବର କାଗଜ, ନା ରେଡ଼ିଓ । ଏପରିକି ଦେଶରେ ହୋଇଯାଇଥିବା ଭୟଙ୍କର ଯୁଦ୍ଧ, ଶାସନରେ ପରିବର୍ତ୍ତନ ବିଷୟରେ ମଧ୍ୟ ତାଙ୍କୁ କିଛି ବି ଜଣା ନଥିଲା । ଏହି ପରି ଭାବରେ ତାଙ୍କର ନିର୍ବାସନର ୧୭ ବର୍ଷ ବିତିଗଲା । ଏହି ସମୟ ମଧ୍ୟରେ ସେ ୫ଟି ବିଷୟରେ ପ୍ରବୀଣ ହେଇଯାଇଥିଲେ ଓ ତାଙ୍କର ଗବେଷଣା ସବୁକୁ ପାଣ୍ଡୁଲିପି ଭାବରେ ଲେଖି ତାହାକୁ ନିରୀକ୍ଷ୍ୟା କରିବାକୁ ବିଶ୍ୱବିଦ୍ୟାଳୟର ପ୍ରଫେସରଙ୍କ ପାଖକୁ ପଠେଇବାକୁ ଅନୁରୋଧ କରିଥିଲେ । ସେ ଗୁଡ଼ିକ ଅତ୍ୟନ୍ତ ଉଚ୍ଚକୋଟିର ହେଇଥିବାର ଜଣା ଯାଇଥିଲା । ତେବେ ସର୍ତ୍ତ ଅନୁସାରେ ଏକଥା ତାଙ୍କୁ ଜଣାଇ ଦିଆଯାଇ ନଥିଲା ।

ଏହା ପରେ ତାଙ୍କର ମନ ଓ କାର୍ଯ୍ୟ ସମ୍ପୂର୍ଣ୍ଣ ଆଧ୍ୟାତ୍ମିକ ଦିଗରେ ଯାଉଥିବାର ଜଣା ଗଲା । ସେ ବିଭିନ୍ନ ଧର୍ମ ଉପରେ ଅଧ୍ୟୟନ କରିବା ସହ ପୂଜା ଆରାଧନା ମଧ୍ୟ କରିବାର ଜଣା ଗଲା । ବୌଦ୍ଧ, ଜୈନ ଧର୍ମର ନୀତି ଶାସ୍ତ୍ର ସହ ହିନ୍ଦୁ, ମୁସ୍‌ଲିମ୍ ଓ ବିଶ୍ୱର ଅନ୍ୟ ଧର୍ମ ଉପରେ ମଧ୍ୟ ସେ ଅଧ୍ୟୟନ କଲେ । ସେହି






ସମୟରେ ତାଙ୍କର ଖାଦ୍ୟ ରୁଚି ଅତ୍ୟନ୍ତ ସରଳ ହେଇଗଲା । ସେ ସପ୍ତାହରେ ୨ ଦିନ ଉପବାସ ମଧ୍ୟ କରିବା ଜଣାଗଲା । ଏହି ପରି ୧୯ ବର୍ଷ ବିତିଗଲା । ତାହା ପରେ ପୁଣି ଦେଖୁ ଦେଖୁ ୬ ମାସ, ୮ ମାସ ହେଇ ଶେଷ ମାସରେ ପହଞ୍ଚିଲା । ଏହି ସମୟ ମଧ୍ୟରେ ତାଙ୍କର ବନ୍ଧୁମାନେ ସବୁ ଦିନେ କ୍ଲବରେ ଭେଟିଥାନ୍ତି । ବାସିଲଙ୍କ ଉପରେ ଆଲୋଚନା କରନ୍ତି । ପ୍ରଥମରୁ ଷ୍ଟୁଆର୍ଟ କହୁଥିଲେ ଯେ ବାସିଲ ବେଶୀ ହେଲେ ୨/୩ ବର୍ଷ ସବୁ ସୁବିଧା ପାଇ ରହିବା ପରେ ବାହାର ଦୁନିଆ ଓ ସ୍ୱାଧୀନତାକୁ ଝୁରି ହେଲେ ଓ ସର୍ତ୍ତ ସମର୍ପଣ କରି ବାହାରି ଆସିବେ । କିନ୍ତୁ ପରେ ତାଙ୍କର କାର୍ଯ୍ୟକଳାପ ଦେଖି ସେ ତାଙ୍କ ମତ ବଦଳେଇଲେ । ଶେଷ ବର୍ଷ ପହଞ୍ଚିଲା ବେଳକୁ ସବୁ ବନ୍ଧୁ ହତାସ ହୋଇଗଲେ ଓ ବାସିଲ ଜିତିବା ସୁନିଶ୍ଚିତ ବୋଲି ଜାଣିଲେ । ମାଇକେଲ ଏହିପରି ବାସିଲଙ୍କ ଶ୍ରେଷ୍ଠ ୨୦ ବର୍ଷ ନିର୍ବାସନରେ ପଠେଇବାରେ ଭାଗ ନେଇଥିବାରୁ ନିଜର ଅନୁତାପ ମଧ୍ୟ ବ୍ୟକ୍ତ କରିଥିଲେ । ଏଣେ ଜନ୍‌ଙ୍କ ବ୍ୟବସାରେ ବହୁତ କ୍ଷତି ହୋଇଥିବାରୁ ସେ ଚିନ୍ତିତ ଥାନ୍ତି ଆଉ କିଛିଦିନ ପରେ ବାସିଲ ବାହାରିଲେ ତାଙ୍କୁ ଦେବାଳିଆ ହେବାକୁ ପଡ଼ିପାରେ । ଷ୍ଟୁଆର୍ଟ ମଧ୍ୟ ଆର୍ଥିକ ଭାବରେ କ୍ଷତିଗ୍ରସ୍ତ ହେବାର ଚିନ୍ତାରେ ଥାନ୍ତି ।

ଠିକ ୨୦ ବର୍ଷ ପରେ ୩ ଜଣ ବନ୍ଧୁ ନିର୍ଦ୍ଧାରିତ ଦିନ ସକାଳେ ଫର୍ମ ଗୃହରେ ପହଞ୍ଚିଲେ । ମୁଖ୍ୟ ଦ୍ୱାର ଖୋଲି ବାସିଲଙ୍କୁ ଡାକିଲେ । ହେଲେ କୌଣସି ଠାରୁ କିଛି ଉତ୍ତର ଆସିଲା ନହିଁ । ସେମାନେ ସବୁଆଡ଼େ ଖୋଜି ସାରିଲା ପରେ ୩ ବାସିଲଙ୍କ ଶଯ୍ୟା ଉପରେ ଏକ ଚିଠି ରଖା ଯାଇଥିବାର ଦେଖିଲେ । ଚିଠିରେ ଲେଖା ଥିଲା

"ମୋର ବନ୍ଧୁମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ । ଆମ ଭିତରେ ବାଜି ଲାଗି ମୁଁ ଫାର୍ମ ଘରେ ନିର୍ବାସିତ ହୋଇ ରହିବାର ଠିକ ୨୦ ବର୍ଷ ଆଜି ବର୍ତ୍ତମାନ ସମାପ୍ତ ହେଉଛି । ମୁଁ ଯଦି ଏବେ ଏଠାରେ ଥାନ୍ତି, ତୁମ ମାନଙ୍କ ସହ ୨୦ ବର୍ଷ ପରେ ଦେଖା ହେଇଥାନ୍ତା । ସମସ୍ତଙ୍କ ଚେହେରା ହୁଏତ କିଛି ବଦଳି ଯାଇଥିବ ।






ମୁଁ ନିଜେ ଭିତରକୁ ଆସିବା ବେଳେ ମୋତେ ୩୦ ବର୍ଷ ହେଇଥିଲା । ଏବେ ମୋତେ ୫୦ ବର୍ଷ । ଏହି ସମୟରେ ମୁଁ ଯଦି ତୁମମାନଙ୍କ ସହ ଥାଆନ୍ତି, ମୁଁ ୨ଟି ଦାମୀ ଘର ସହ ଅଜସ୍ର ପଇସାର ମାଲିକ ହୋଇ ସାରା ଜୀବନପାଇଁ ଆଡ଼ମ୍ବରରେ ରହିଥାନ୍ତି । ମୋ ନିଜ ଟଙ୍କା ମଧ୍ୟ ମୋ ପାଖରେ ଥାଆନ୍ତା । ତେବେ ମୁଁ ନିର୍ଦ୍ଧାରିତ ସମୟର ୪ ଘଣ୍ଟା ଆଗରୁ ଭୋର ୪ଟାରୁ ସ୍ୱଇଚ୍ଛାରେ ବଗିଚାର ପ୍ରାଚୀର ଡେଇଁ ଚାଲି ଯାଉଛି । ମୋତେ ଖୋଜିବାର ଉଦ୍ୟମ ମଧ୍ୟ କେହି ନ କରିବାକୁ ଅନୁରୋଧ । ଏହି ସମୟରେ ମୁଁ ବହୁ ଦୂରକୁ ଚାଲିଯାଇଥିବି । ମୁଁ ବାଜି ସମର୍ପଣ କଲି । ମୋ ଅର୍ଥ ମଧ୍ୟ ତୁମେ ମାନେ ବ୍ୟାଙ୍କରୁ କାଢ଼ି ନେଇଯିବ । ସେଥିପାଇଁ ଆଦେଶ ପାତ୍ର ମଧ୍ୟ ମୁଁ ରଖି ଦେଇଛି ।”

“ମୁଁ ଏପରି କରିବାର କାରଣ ତୁମେ ପଚାରିବ । ଏହି ୨୦ ବର୍ଷ ଭିତରେ ମୁଁ ପ୍ରାୟ ସମସ୍ତ ପ୍ରକାର ଜ୍ଞାନ ବିଷୟରେ ବିଷଦ ଭାବରେ ପରିଚିତ ହେଇଛି । ସମସ୍ତ ଧର୍ମ ବିଷୟରେ ପଠନ କରିଛି, ଅଧ୍ୟୟନ କରିଛି । ଏହା ପରେ ମୋର ହୃଦବୋଧ ହୋଇଛି ସମସ୍ତ ଜିନିଷ, ମାୟା ମୋହ ସବୁ ଅସ୍ଥାୟୀ । ସବୁ ଧର୍ମର ମଧ୍ୟ ମୂଳ ମନ୍ତ୍ର ସମାନ । କେବଳ ଏକ ମାତ୍ର ଧର୍ମ ହେଲା ମାନବ ଧର୍ମ । ମାନବ ମାନବକୁ ଭଲପାଇଲେ ଯାଇ ସଂସାର ସୁଖୀ ହେବ । ମୁଁ ଅନୁଭବ କଲି ମୋର କର୍ତ୍ତବ୍ୟ ବର୍ତ୍ତମାନ ଏହି ମାନବ ଧର୍ମର ପ୍ରସାର କରିବା । ତୁମମାନଙ୍କ ସହୃଦୟତାରୁ ତୁମେ ଦେଇଥିବା ସୁବିଧା ଯୋଗୁଁ ମୁଁ ଯେତିକି ଜ୍ଞାନ ହାସଲ କରିଛି ପୃଥିବୀର ଯେ କୌଣସି ସ୍ଥାନରେ ମୋର ଚାଲିବା ପାଇଁ ଅସୁବିଧା ହେବ ନାହିଁ । ଅର୍ଥରେ ମଧ୍ୟ ମୋର ପ୍ରୟୋଜନ ନାହିଁ । ହାସଲ କରିଥିବା ବିଦ୍ୟା ଦ୍ୱାରା ମୁଁ ସବୁ ହାସଲ କରି ପାରିବି । ବନ୍ଧୁମାନେ, ମୁଁ ୨୦ ବର୍ଷ ଆଗରୁ ତୁମକୁ ଦେଖିଥିବା ଚେହେରାର ସ୍ମୃତି ସହ ମୁଁ ଚିରଦିନ ପାଇଁ ବିଦାୟ ନେଉଛି ।”

ଅବସରପ୍ରାପ୍ତ ଅଧ୍ୟକ୍ଷ, ଲକ୍ଷ୍ମୀନାରାୟଣ କଲେଜ, ଝାରସୁଗୁଡ଼ା






# ଅଳିଆ



ସୁଲଗ୍ନା ମହାନ୍ତି

ଘରେ ଅଗଡ଼ମ ବଗଡମ୍ ଜିନିଷର ମାତ୍ରା ବଢ଼ି ଚାଲିଥିଲା । ଦରକାରୀ ଜିନିଷଠୁ ଅଦରକାରୀ ଜିନିଷଗୁଡ଼ିଏ ଘରେ ନିଜ ରାଜୁତି ଚଳେଇଥିଲେ । ଶ୍ରୀମତୀ ବହୁତ ଦିନରୁ ଲଗେଇଥିଲେ ଘର ସଫେଇ ପାଇଁ ଆଉ ସେଇଥିପାଇଁ ଆଜି ରବିବାରଟାରେ ମୁଁ ପୁରା ଦମରେ ଅଳିଆ ସଫା କରିବାରେ ଜୁଟି ଯାଇଥିଲି ।

ପୁରୁଣା କାଗଜପତ୍ର, ଖବର କାଗଜ, ଭଙ୍ଗା ପାନିଆ, ପ୍ଲାଷ୍ଟିକ ଡବା, ଛିଣ୍ଡା ତାର କେତେ କ'ଣ ଯେ ଘରୁ ବାହାରି ଚାଲିଥିଲା ତାର ଠିକଣା ନଥିଲା । ସବୁ ଜିନିଷକୁ ବାନ୍ଧିବୁନ୍ଧି ଗୋଟିଏ ବସ୍ତାରେ ରଖିଲି ବାହାରେ ଫୋପାଡ଼ିବା ପାଇଁ ।

ହଠାତ୍ ଆଖି ପଡ଼ିଲା ସାଢ଼େ ତିନି ବର୍ଷର ପୁଅ ଗୁଡୁର ଭଙ୍ଗା ଖେଳନା ଉପରେ । ପ୍ଲାଷ୍ଟିକ ବାଇକ୍‌ଟାର ଆଉ କିଛି ବାକି ନାହିଁ କହିଲେ ଚଳେ । ହେଲେ ଗୁଡୁ ଖାଲି ତାକୁ ହିଁ ଧରି ସବୁବେଳେ ବୁଲୁଥାଏ । ବାଇକ୍‌ଟାକୁ ନେଇ ବସ୍ତା ଭିତରେ ପକେଇଦେଲି ଆଉ ସେଇଟା ଗୁଡୁ ଆଖିରେ ପଡ଼ିଗଲା । ଅଧାଖିଆ ଅବସ୍ଥାରେ ଦଉଡ଼ି ଆସି ପାଟିକଲା, "ବାବା ବାବା, ମୋ ଗାଡ଼ି ଫିଙ୍ଗି ଦିଅନି ।" ମୁଁ ନାଲିଆଖି ଦେଖେଇ ତାକୁ ଚୁପ୍ କଲାରୁ ସେ ଭେଁ ଭେଁ ରଡ଼ିକରି ଭୂଇଁ ଉପରେ ଗଡ଼ିଗଲା । ମୁଁ ସ୍ତ୍ରୀଙ୍କୁ ଆଦେଶ ଦେଲି ତାକୁ ନେଇ ଖୁଏଇଦବା ପାଇଁ ।

ଘରର ଛୋଟ ଛୋଟ ଅଳିଆସବୁ ବାହାର କଲାପରେ ବଡ଼






ବଡ଼ ଅଳିଆଗୁଡା ଉପରେ ନଜର ପକେଇଲି । ଷ୍ଟୋରରୁମରେ ପୁରୁଣା କୁଲର, ଭଙ୍ଗା ଫିଲ୍ଟର୍, କଳଙ୍କିଲଗା ଟେବୁଲପଙ୍ଖା ପଡ଼ିଥିଲା । ବହୁତ କିଛି ସଫା ହବ । ତାପରେ ମୁଁ ଦାଣ୍ଡପଟ ଗ୍ୟାରେଜ ଆଡ଼କୁ ପାଦ ବଢ଼େଇଲି ।

ଗ୍ୟାରେଜର ଗୋଟିଏ କୋଣରେ ବାପାଙ୍କ ପୁରୁଣା ବଜାଜ ଚେତକ୍ ସ୍କୁଟର । କେଉଁ ଦଶ ବର୍ଷ ହେଲା ବାପା ଚଲେଇ ନାହାନ୍ତି । ସ୍କୁଟରଟାକୁ ଗଡ଼େଇ ଆଣି ବାହାରେ ଥୋଇଲି । କାହାକୁ ବିକି ଦେଲେ ଯିବ । କିନ୍ତୁ ପାଂଚଶ ଟଙ୍କାରେ ବି ଯିବନି ।

ପଛକୁ ବୁଲି ପଡ଼ିଲା ବେଳକୁ ବାପା । ସ୍କୁଟର ଉପରେ ଧୀରେ ଧୀରେ ନିଜ ଶିରାଳ ହାତ ବୁଲେଇଲେ । ଏମିତି ଲାଗିଲା ଯେମିତି କଅଁଳିଆ ଛୁଆଟିଏକୁ ଆଉସୁଁଛନ୍ତି । କହିଲେ, "କେତେ ଖରା ବର୍ଷା ଶୀତ ସହିଛି ମୋ ସାଙ୍ଗରେ ଇଏ । କାଲି ଭଳି ଲାଗୁଚି ୟାକୁ କିଣି ଘରକୁ ଆଣିଥିଲି ।" ଏତିକି କହି ବାପା ଦୀର୍ଘଶ୍ୱାସଟେ ମାରିଲେ ।

କାହିଁକି କେଜାଣି ଗୁଡୁର ସେ ରାହାଦିଆ କାନ୍ଦ ଆଉ ବାପାଙ୍କର ଦୀର୍ଘଶ୍ୱାସ ମତେ ଏକାଭଳି ମନେହେଲା । ମୁଁ ସ୍କୁଟରଟାକୁ ନେଇ ଚୁପଚାପ ତା' ଜାଗାରେ ରଖିଦେଲି ଆଉ ସେ ବସ୍ତା ଭିତରୁ ଭଙ୍ଗା ବାଇକ୍‌ଟାକୁ ଗୁଡୁକୁ ଦବାପାଇଁ ଘର ଭିତରକୁ ପଶିଗଲି । ଆଜି ସ୍ମୃତି ଆଉ ଅଳିଆ ଭିତରେ ଥିବା ସୂକ୍ଷ୍ମ ତଫାତ୍‌ଟିକୁ ବହୁତ ଭଲ ଭାବରେ ବୁଝିଯାଇଥିଲି ।

ସହକାରୀ ଅଧ୍ୟାପିକା, ଅମୃତା ବିଶ୍ୱବିଦ୍ୟାଳୟ, କୋଏମ୍ବାଟୁର୍, ତାମିଲ୍‌ନାଡୁ

ଇମେଲ୍ - sulagna2008@gmail.com




# ଅମୃତସମ ବେଲ



ପ୍ରତିଭା ପ୍ରିୟଦର୍ଶିନୀ

ଗ୍ରୀଷ୍ମଋତୁରେ ଗରମରୁ ରକ୍ଷା ପାଇବା ପାଇଁ ବେଲ, ପ୍ରକୃତି ମା' ପ୍ରଦତ୍ତ ଏକ ମିଠା ବରଦାନ ସଦୃଶ । କୁହାଯାଏ "ରୋଗାନ ବିଲତ୍ତି - ଭିନତ୍ତି ଇତି ବିଲ୍ୱ" ଅର୍ଥାତ ରୋଗନଷ୍ଟ କରିବାର ଗୁଣ ଯୋଗୁଁ ବେଲକୁ ବିଲ୍ୱ ବୋଲି କୁହାଯାଇଛି । ଏହା ସୁବର୍ଣ୍ଣ ହଳଦୀ ରଙ୍ଗର, ସ୍ୱାଦିଷ୍ଟ ଶସ ଓ କଠୋର ଖୋଳପା ଯୁକ୍ତ ଏକ ଲାଭଦାୟକ ଫଳ ଅଟେ । ଗ୍ରୀଷ୍ମ ସମୟରେ ଏହାର ସେବନ ଖୁବ୍ ସ୍ୱାସ୍ଥ୍ୟପ୍ରଦ । ଶାଣ୍ଡିଲ୍ୟ, ଶ୍ରୀଫଳ, ସଦାଫଳ ଆଦି ନାମରେ ମଧ୍ୟ ଏହା ବିଭିନ୍ନ ସ୍ଥାନରେ ପରିଚିତ । ଏହାର ନରମ ଆର୍ଦ୍ର ଶସକୁ ବିଲ୍ୱ କର୍କଟୀ ଓ ଶୁଷ୍କ ଶସକୁ ବେଲଗିରି କୁହାଯାଏ । ସ୍ୱାସ୍ଥ୍ୟ ସଚେତନ ଲୋକମାନେ ଏହାର ଶସକୁ ପଣା ଆକାରରେ ପିଇ ଶରୀରକୁ ଶୀତଳ ରଖିବାକୁ ଚାହାନ୍ତି ଏବଂ ଭକ୍ତମାନେ ନିଜ ଆରାଧ୍ୟ ମହାଦେବଙ୍କୁ ସମର୍ପି ଆନନ୍ଦ ଅନୁଭବ କରନ୍ତି ।

ଔଷଧୀୟ ପ୍ରୟୋଗ ପାଇଁ ବେଲର ଶସ, ଗିରି, ପତ୍ର, ଚେର ଏବଂ ଛାଲିର ଚୂର୍ଣ୍ଣ ଇତ୍ୟାଦି ଉପଯୋଗ କରାଯାଏ । ଚୂର୍ଣ୍ଣ ପ୍ରସ୍ତୁତ କରିବା ପାଇଁ କଞ୍ଚା ଫଳ ବ୍ୟବହାର କରାଯାଏ ଏବଂ ଅଧାପାଚିଲା ଫଳ ମୁରବ୍ବା ତିଆରି ପାଇଁ ଓ ସମ୍ପୂର୍ଣ୍ଣ ପକ୍ୱଫଳ ସରବତ/ପଣା ପ୍ରସ୍ତୁତି ପାଇଁ ବ୍ୟବହାର କରାଯାଏ । ଏହି ସ୍ୱାସ୍ଥ୍ୟବର୍ଦ୍ଧକ ଫଳଟି ଉତ୍ତମ ବାୟୁନାଶକ, କଫ ନିଷ୍କାସକ ଏବଂ ଜଠରାଗ୍ନିବର୍ଦ୍ଧକ ଅଟେ । ଏହା କୃମି ଓ ଦୁର୍ଗନ୍ଧ ନାଶ କରେ । ଏଥିରେ ଥିବା ଉଦବାୟୀ ତୈଳ ଓ ଇଗେଲିନ୍, ଇଗେଲିନିନ୍ ନାମକ କ୍ଷାର-ତତ୍ତ୍ୱ ଇତ୍ୟାଦି ଔଷଧୀୟ






ଗୁଣରେ ଭରପୁର ଅଟନ୍ତି ।

ଚତୁର୍ମାସରେ ଉତ୍ପନ୍ନ ହେଉଥିବା ରୋଗ ଗୁଡ଼ିକର ପ୍ରତିକାର କରିବା ଶକ୍ତି ବିଲ୍ୱପତ୍ରରେ ଅଛି । ବେଲପତ୍ର ଜ୍ୱରନାଶକ, ବେଦନାହାର, କୃମିନାଶକ, ସଂଗ୍ରାହୀ (ଶରୀରର ମଳକୁ ଏକତ୍ର ବାନ୍ଧିଆଣିବା ଗୁଣର ପଦାର୍ଥ) ଏବଂ ଫୁଲା କମାଇବା ଇତ୍ୟାଦି ଗୁଣର ଭଣ୍ଡାର । ଏହା ମୂତ୍ରଗତ ଶର୍କରାର ପରିମାଣ କମ୍ କରେ । ଶରୀରର ସୂକ୍ଷ୍ମମଳ ଗୁଡ଼ିକୁ ଶୋଷଣ କରି ମୂତ୍ର ମାଧ୍ୟମରେ ସେ ସବୁକୁ ନିଷ୍କାସିତ କରିଦିଏ । ଏହାଦ୍ୱାରା ଶରୀରର ଆଭ୍ୟନ୍ତରୀଣ ବିଶୁଦ୍ଧି ହୁଏ । ବେଲପତ୍ର ହୃଦୟ ଓ ମସ୍ତିଷ୍କକୁ ବଳ ପ୍ରଦାନ କରେ । ଏହାର ସେବନ ଦ୍ୱାରା ମନରେ ସାତ୍ତ୍ୱିକତା ଆସେ ।

ସଂକ୍ଷେପରେ ବେଲର ଉପାଦେୟତା :

* ଏହି ପେୟ ଗୋଟିଏ ପଟେ ଗରମରୁ ରକ୍ଷା କରୁଥିବାବେଳେ ଏହାର ସେବନ ଶରୀର ପାଇଁ ମଧ୍ୟ ଲାଭପ୍ରଦ । ଶରୀରକୁ ଶକ୍ତିଶାଳୀ ରଖିବା ଭଳି ତତ୍ତ୍ୱ ବେଲରେ ରହିଛି । ଏହାର ସେବନ ଯୋଗୁଁ କୌଣସି ପ୍ରତିକୂଳ ପ୍ରଭାବ ପଡ଼େନାହିଁ ବରଂ ଏହା ରୋଗ ଦୂରକରି ସ୍ଫୂର୍ତ୍ତି ପ୍ରଦାନକରେ ।

*ଖରା ସମୟରେ ଅଂଶୁଘାତ ହେଲେ ଏହାର ସର୍ବତ ପିଇଲେ ଶୀଘ୍ର ଆରାମ ମିଳେ ଓ ଉତ୍ତପ୍ତ ଶରୀରର ତାପ କମ୍ ହୁଏ ।

*ପୁରୁଣାରୁ ପୁରୁଣା ଆମ (gas) ରୋଗ ପ୍ରତିକାର ପାଇଁ ଅର୍ଦ୍ଧପକ୍ୱ ବିଲ୍ୱଫଳ ସେବନ କରିବା ଲାଭପ୍ରଦ ।

*ପାଚିଲା ବେଲର ଅଠାଳିଆପଣ ଯୋଗୁଁ ଡାଇରିଆ ରୋଗରେ ଖୁବ୍ ଲାଭକାରୀ ସାବ୍ୟସ୍ତ ହୁଏ । ଏହି ଫଳ ଉତ୍ତମ ପାଚକ ହେବା ସହିତ ବଳ ବର୍ଦ୍ଧକ ମଧ୍ୟ ।

* ପାଚିଲା ବେଲ ଖାଇବାଦ୍ୱାରା ବାତ-କଫର ଶମନ ହୁଏ ।

* ଆଖିରେ ପୀଡ଼ା ହେଉଥିଲେ, ବେଲପତ୍ରକୁ ଛେଚି ଆଖି ଉପରେ ବାନ୍ଧିଲେ ବେଶ୍ ଆରାମ ମିଳେ ।






*ପ୍ରାୟତଃ ଗ୍ରୀଷ୍ମସମୟରେ ଆଖି ନାଲି ପଡ଼ିଯାଇ ଖୁବ୍ ପୋଡ଼ାଜଳା ହୁଏ । ଏଭଳି ସ୍ଥିତିରେ ବେଲପତ୍ରର ରସ ଏକ ଏକ ବୁନ୍ଦା ଆଖିରେ ପକାଇଲେ ନାଲିପଣ ଓ ଜ୍ୱଳନରୁ ଶୀଘ୍ର ଆରାମ ମିଳେ ।

*ପିଲାଙ୍କ ପେଟରେ କୃମି ହେଉଥିଲେ ବେଲପତ୍ରର ଅର୍କ ବାହାର କରି ପିଆଇବା ଉଚିତ ।

*ବେଲଗଛ ଛାଲିର କ୍ୱାଥ ପିଇଲେ ଅତିସାର ରୋଗରେ ଆରାମ ମିଳେ ।

*ପାଚିଲା ବେଲକୁ ମହୁ ଓ ମିଶ୍ରି ସହିତ ଚାଟିଲେ ଶରୀରରେ ରକ୍ତହୀନତା କମ୍ ହୁଏ ଏବଂ ରକ୍ତ ପରିଷ୍କାର ହୁଏ ।

*ବେଲ ମୁରବ୍ବା ସମସ୍ତ ପ୍ରକାର ଉଦର ବିକାରରୁ ମୁକ୍ତିଦିଏ ଓ ଶରୀରର ଶକ୍ତି ବୃଦ୍ଧିକରେ ।

*ପାଚିଲା ବେଲର ସର୍ବତ ପିଇଲେ ପେଟ ସଫା ରହେ ।

*ଗ୍ରୀଷ୍ମ ସମୟରେ ଗର୍ଭବତୀ ମହିଳାଙ୍କ ଦେହ ବିଚଳିତ ଲାଗିଲେ ବେଲ ଓ ସୁଣ୍ଠିର କ୍ୱାଥ ଦୁଇ ଚାମଚ ପିଇଲେ ଆରାମ ମିଳେ ।

*ପାଚିଲାବେଲ ଶସରେ ଗୋଲମରିଚ ଓ ସୈନ୍ଧବଲବଣ ମିଶାଇ ଖାଇଲେ କଣ୍ଠ ସୁରିଲା ରହେ ।

*ଛୋଟପିଲାଙ୍କୁ ପ୍ରତିଦିନ ଏକ ଚାମଚ ପାଚିଲାବେଲ ଖୁଆଇଲେ ସେମାନଙ୍କ ଅସ୍ଥି ମଜବୁତ୍ ହୁଏ ।

ତେବେ ଏହିସବୁ ବ୍ୟବହାର ପୂର୍ବରୁ କୌଣସି ଅଭିଜ୍ଞ ଆୟୁର୍ବେଦାଚାର୍ଯ୍ୟଙ୍କ ପରାମର୍ଶ ନେବା ଉତ୍ତମ ବିଚାର ।

କଟକ

# ଆଲାର୍ମ




ପାରମିତା ମିଶ୍ର


ସବିତା ଦେବୀ ଭାରି ଗୁଣି ମଣିଷ ଟିଏ । ବୟସ ଏଇ ଷାଠିଏ କି ସତୁରି ହେବ । ଏଇ ଦୁଇ ବାଇ ଚାରି ଘରଟିରେ ଏକା ରୁହନ୍ତି । ଉପର ଘରଟିକୁ ଆମ ଭଳି ପାଠ ପଢୁଆ ଝିଅ କେତେଜଣଙ୍କୁ ଭଡ଼ାରେ ଦେଇଛନ୍ତି । ପ୍ରାୟ ଦଶବର୍ଷ ହେବ ଏମିତି ଏକା ରହି ଆସୁଛନ୍ତି ସେ । ସ୍ୱାମୀ ଆଉ ନାହନ୍ତି, ପିଲାମାନେ ବାହରେ ରୁହନ୍ତି । ଭାରି ସମୟାନୁବର୍ତି ସେ, ଘର ସାରା ଆଲର୍ମ ଘଣ୍ଟା ଲାଗିଛି । କିନ୍ତୁ କେବେ ବାଜିବା ଆମେ ଶୁଣିନୁ । ସବିତାଦେବୀ ତ ଘରର କଲିଂଗ ବେଲରେ ବି ଟାପ୍ ଲଗେଇ ରଖିଛନ୍ତି । କିଏ କଲିଂଗ ବେଲ ମାରିବା ଯାଏଁ ଯାଏନି, କେହି ଦୁଆର ମୁହଁକୁ ଆସିବା ଆଗରୁ ହିଁ ଦୁଆର ଖୋଲି ଦିଅନ୍ତି ସେ, କେଜାଣି କେମିତି ଜାଣନ୍ତି ।

ସକାଳ ଠିକ୍ ପାଞ୍ଚଟାରେ ଉଠନ୍ତି ନା ଗୋଟେ କଣ୍ଟା ଏପଟ ନା ସେପଟ ଆଲାର୍ମ ବାଜିବା ପୁର୍ବରୁ ହିଁ ତାକୁ ବନ୍ଦ କରିଦିଅନ୍ତି । ସିଧା ଯାଇ ରୋଷେଇରେ ଧିମା ଆଞ୍ଚରେ ଚାହା ଚଢ଼ାନ୍ତି ଆଉ ଗାଧୁଆ ଘରେ ପଶନ୍ତି ଠିକ ଦଶମିନଟରେ ବାହାରି ଆସନ୍ତି । ରନ୍ଧା ଘରର ଆଲର୍ମ ବନ୍ଦ କରି ସେଠୁ ଚା'କୁ କପରେ ଧରି ବାରଣ୍ଡାରେ ଦୁର ଦିବାକରକୁ ଚାହିଁ ବସନ୍ତି କିଛି ସମୟ । କ୍ଷୀରବାଲା ବେଲ ମାରିବା ପୁର୍ବରୁ ସେଠି ବାସନ ଧରି ଠିଆ ହୋଇଯାଆନ୍ତି ସେ । କବାଟ କଣରୁ ଖବର କାଗଜଟି ବାହାର କରି ଠିକ ଟେବୁଲର ମଝିରେ ରଖନ୍ତି । ଘଡ଼ି କଣ୍ଟାରେ ଦଶ ବାଜିବା ଆଗରୁ ଡାଇନିଂଗର ଆଲର୍ମକୁ ବନ୍ଦ କରି ଜଳଖିଆ ଧରି ବସି ଯାଆନ୍ତି । ଏଇମିତି ସବୁ






ଜାଗାରେ ଗୋଟିଏ ଗୋଟିଏ ଆଲାର୍ମ୍ ଘଡ଼ି ସବୁ କାମ ପାଇଁ । ପ୍ରତିଦିନ ଏଇ କାର୍ଯ୍ୟକ୍ରମ ତାଙ୍କର ସ୍ଥିର ଥାଏ । ଦିନର ସମସ୍ତ କାମ ସରିଲା ପରେ ଶୋଇବା ପୂର୍ବରୁ ପୁଣି ଦ୍ୱିତୀୟ ଦିନ ସମାନ ଆଲାର୍ମ ଲଗେଇ ଦେଇ ଶୋଇଯାଆନ୍ତି ସେ ।

ମୁଁ ଏଠିକି ଆସିବା ବାସ କିଛି ଦିନ ହିଁ ହୋଇଥିଲା ମୋ ସହପାଠିମାନଙ୍କ ଠାରୁ ଏସବୁ କଥା ଶୁଣିଥିଲି ମତେ ବହୁତ କୌତୁହଳ ଲାଗୁଥିଲା ଜାଣିବା ପାଇଁ, କାହିଁକି ଜଣେ ମଣିଷ ଏମିତି ବାନ୍ଧି ରଖିଛି ନିଜକୁ ଘଡ଼ି ଭିତରେ । ଅନୁଶାସନ ମନୁଷ୍ୟ ପାଇଁ ଆବଶ୍ୟକ କିନ୍ତୁ ଏମିତି ଲାଗୁଥିଲା ଯେମିତି ସେ ଘର ଭିତରେ କେହି ଜଣେ ସବିତା ଦେବୀଙ୍କୁ ବନ୍ଦୀ କରି ରଖିଛି ଆଉ ଏଇ ଘଡ଼ିମାନେ ତାକୁ ଅନବରତ ଚାହିଁ ରହିଛନ୍ତି କିନ୍ତୁ କିଏ ? ବହୁତଥର ଚେଷ୍ଟା କରିଛି ପଚାରିବା ପାଇଁ କିନ୍ତୁ ସାହାସ ହୋଇନି । ଦିନେ ସଞ୍ଜବେଳେ ସବିତାଦେବୀ ଛାତକୁ ଯାଉଥିଲେ ଗଛରେ ପାଣି ଦେବା ପାଇଁ, ମୁଁ ବି ତାଙ୍କ ପଛରେ ସେଠିକି ଆସିଲି ଏଇମିତି ଧିରେ ଧିରେ ଆମ ଦୁହିଁଙ୍କର ବନ୍ଧୁତା ହୋଇଗଲା । ସବିତା ଦେବୀ ନିଜେ କୁହନ୍ତି ମୁ ତାଙ୍କର ପ୍ରଥମ ଆଉ ବୋଧହୁଏ ଶେଷ ବନ୍ଧୁ । ଏଇମିତି କିଛିଦିନ ବିତିଗଲା ପରେ ଦିନେ ମୁଁ ସାହହା କରି ପଚାରିଲି ଭବିଥିଲି କାଳେ ବିରକ୍ତ ହେବେ କିନ୍ତୁ ସେମିତି କିଛି ହେଲାନି, ପ୍ରଥମ ଥର ତାଙ୍କ ଆଖିରେ ଭୟ ଦେଖିଲି, କିଛି କହିବା ପୂର୍ବରୁ ପାଖରେ ଥିବା ପାଣିଗିଲାସଟିକୁ ପିଇଗଲେ ଆଉ କିଛି ସମୟପରେ କହିଲେ କିଛି ନାହିଁ ବାସ ଅଭ୍ୟାସରେ ପଡ଼ିଗଲାଣି ଯେ ଆଉ ଯାଉନି । ମୁଁ ଉଣିଶି ବର୍ଷର ଥିଲି ବାହା ହୋଇ ଆସିଥିଲି, ମାଁ କାନେ କାନେ କହିଥିଲା ସ୍ୱାମୀ ହେଲେ ତୋର ଦେବତା ତାଙ୍କ କଥାକୁ ଅକ୍ଷରେ ଅକ୍ଷରେ ପାଳିବୁ । ଅବାଧ୍ୟ ହେଲେ ବାପା ମାଁର ନାଁ ପଡ଼ିଯିବ । ବଧୁ ବେଶରେ ଆସିଛୁ ପୁଣି ଅସ୍ଥିରେ ବାହାରିବୁ । ମୁଁ ଠିକ ସେୟା ହିଁ କରି ଚାଲିଲି । ସ୍ୱାମୀଙ୍କୁ ସବୁ କାମ ଏକଦମ ସମୟରେ ଦରକାର୍, ନା ଟିକେ ଏପଟ ନା ସେପଟ, ଶବ୍ଦ ବିଲକୁଲ ପସନ୍ଦ ନଥିଲା ଆଲାର୍ମ ଘଡ଼ି ଗୁଡ଼ିକ ଲାଗିଛି ତ କିନ୍ତୁ ଶବ୍ଦ ହେଲା ମାତ୍ରେ ଜୋର ଜୋର କଣ୍ଠରେ ପିଟନ୍ତି ।






ମୁଁ ପଚାରିଲି କଣ ଘଡ଼ି ଗୁଡ଼ିକୁ ?

ମୋ ଆଡ଼େ ଚାହିଁ ସବିତା ଦେବୀ କହିଲେ, “ନା, ମୋତେ ।”

ମୁଁ ଅବାକ ହୋଇ ଚାହିଁ ରହିଲି କେବଳ ।

ଘଡ଼ିର କଣ୍ଟା ସହ ମତେ ବୁଲେଇବା ସେ ଶିଖେଇଦେଇ ଯାଇଛନ୍ତି । ମୋର ଚାରୋଟି ଛୁଆ ହେଲେ ମୋ ସ୍ୱାମୀ କୋଳାହଳ ଜମା ସହିପାରନ୍ତି ନାହିଁ, ତେଣୁ ସବୁ ଛୁଆ ମୋର ବୋର୍ଡିଙ୍ଗରେ ରହି ପାଠ ପଢ଼ିଲେ ଆଉ ବାପାଙ୍କ ଏତାଦୃଶ ପ୍ରକୃତି ଦେଖି ଆଉ ଘରକୁ ଆସିଲେନି ।

ମୁଁ କିଛି ପଚାରିବା ପୁର୍ବରୁ ହିଁ ସେ କହିଲେ ହଁ ମୁଁ ଜାଣିଛି କଣ ପଚାରିବ, ମୁଁ କାହିକି ଏଇଠି ରହୁଛି ଏୟା ତ !

ମୁ ତାଙ୍କୁ ବହୁତ ଭଲପାଏ, ମୋତେ ଲାଗେ ସେ ବି ମତେ ଭଲ ପାଉଥିଲେ କାରଣ ଦିନସାରା କୌଣସି ନା କୌଣସି କାରଣରୁ ସେ ମତେ ମାରିଥାନ୍ତି କିନ୍ତୁ ସେ ହିଁ ସେ ଜଖମରେ ମଲମ ବି ଲଗାନ୍ତି । ସେ ମାନୁଥିଲେ ଯେ କାଳେ ସ୍ତ୍ରୀ ସ୍ୱାମୀଠୁ ଆଗୁଆ ମରିବା କଥା ତାହା ହେଲେ ଯାଇ ତାକୁ ସ୍ୱର୍ଗ ସୁଖ ମିଳିବ । ଶେଷ ଶଯ୍ୟାରେ ପଡ଼ିଥିବା ସମୟରେ ସେ ମତେ କାନେ କାନେ କହିଥିଲେ ସାବି ତୁ ଭାବୁଚୁ ମୋ ପରେ ତୁ ଆଜାଦ ହୋଇଯିବୁ, ଏ ଘର ଛାଡ଼ି କୁଆଡ଼େ ବି ଯିବୁନି ସାବି, ମୁଁ ଏଇ ଆଲାର୍ମ ଘଡ଼ି ଭିତରେ ରହି ତତେ ଚାହିଁ ରହିଚି ଆଉ ଏପାରିରେ ତତେ ଅପେକ୍ଷା କରିଚି ମୁଁ ସିନା ସେଠିକୁ ଆସି ପାରିବିନି କିନ୍ତୁ ଦିନେ ନା ଦିନେ ତୁ ତ ଏଠିକି ଆସିବୁ ଆଉ ସେତେବେଳେ ........ । ତମେ କଣ ଭାବୁଚ ମୁଁ ନିଜେ ଉଠୁଚି ଘଡ଼ି ବନ୍ଦ କରିବା ପାଇଁ ସେ ମତେ ଉଠେଇ ଦିଅନ୍ତି, ଜୋରକରି ।

ଏମିତି ଏକ ତର୍କର ମୁଁ କଣ ବା ଜବାବ ଦେବି ଆଉ କଣ କହି ତାଙ୍କୁ ସେ ଭ୍ରମର ଦୁନିଆରୁ ବାହାରକୁ ଆଣିବି ମୁଁ ବୁଝି ପାରୁନଥିଲି । କିଛି ପଚାରିବାକୁ






ଯାଉଥିଲି ସେ କହିଲେ, ମୁଁ ଜାଣିଚି ଏସବୁ ଗୋଟେ ଭ୍ରମ, ମୋ ପିଲାମାନେ ଏ ଘରକୁ ଆସିବାକୁ ଜମା ଚାହୁଁ ନାହାନ୍ତି, ମତେ ବହୁତ ଥର ଡାକୁଛନ୍ତି ଏଠୁ ଚାଲିଯିବାକୁ କିନ୍ତୁ ମୁଁ ବି ସ୍ଥିର କରିସାରିଛି ବାହା ହୋଇ ସ୍ୱାମୀ ହାତ ଧରି ଏଇ ଘରକୁ ଆସିଥିଲି, ଆଉ ଏଇଠୁ କେବଳ ମୋ ଅସ୍ଥି ହିଁ ବାହାରକୁ ଯିବ ।

ହସି କି କହିଲେ ମୋର ଅଭ୍ୟାସ ହୋଇଗଲାଣି ଏବେ, ବର୍ତ୍ତମାନ ପୂଜା ସମୟ ହୋଇଗଲାଣି ଘଡ଼ି ବନ୍ଦ କରିବାର ଅଛି ଯାଉଛି, କାଲି ଆସିବୁ ଘରକୁ, ନାତିର ଜନ୍ମ ଦିନ ତ ପିଠା କରିବି ।

ମୁଁ ଆଉ କିଛି କହିଲିନି, ହସି କି ହଁ ଭରିଲି ।

ଏଇଥିରେ ତାଙ୍କର ଖୁସି ଯଦି ସେଥିରେ ବାଧା ଦେବା ଠିକ ହେବନି ।

ଏମିତି ବହୁତ ଦିନ ଚାଲିଗଲା ମୋର ପରୀକ୍ଷା ଆଗକୁ ଥିଲା । ମୁଁ ପଢ଼ାପଢ଼ିରେ ଟିକେ ବ୍ୟସ୍ତଥିଲି ତେଣୁ ସବିତା ମାଉସୀ ଘର ଆଡ଼େ ଆଉ ଧ୍ୟାନ ଦେଇନଥିଲି, ସେଦିନ ଡେରି ଯାଏଁ ପଢ଼ି ପାହନ୍ତାରୁ ଟିକେ ଆଖି ଲାଗିଥିଲା ହଠାତ ତଳ ଘରୁ ଆଲାର୍ମ ଘଡ଼ିଟି ଜୋରରେ ବାଜି ଉଠିଲା । ମୋର ନିଦ ଭାଙ୍ଗିଗଲା ସହପାଠୀମାନେ ତଳକୁ ଧାଇଁଗଲେ ।

ଆଉ ମୁଁ ?

ମୁଁ ଘଟଣାଟିର ମର୍ମ ଅନୁମାନ କରି ସାରିଥିଲି ............................

ଆମ୍ବପୁଆ, ବ୍ରହ୍ମପୁର, ଓଡ଼ିଶା

ଦୁରଭାଷ-8050874550




# ମହାବଳୀରୁ ଧେଡ଼ିଆ



ଡ: କୁଳାଙ୍ଗାର

ଆମ ପୂର୍ବପୁରୁଷଙ୍କ ତୁଳନାରେ ଆମେ କୁଆଡ଼େ ଛୋଟ ହୋଇ ହୋଇ ଚାଲିଚେ ବୋଲି ବହୁବାର ଅଭିଯୋଗ ହୋଇ ଆସିଛି । ପୁରାଣ ବର୍ଣ୍ଣିତ ମଣିଷମାନଙ୍କର ଚେହେରା ଆଗର ଆମେ ଗୋଟେ ଗୋଟେ କଣ୍ଢେଇଟିଏ ପରି ! ସିଏ ଅସଲ ଚେହେରା ହେଲେ ଆମେ ତାଙ୍କର ଡମିଟିଏ ମାତ୍ର ! ପୁର୍ବରୁ ଏହା କବି ଲେଖକଙ୍କର ଶବ୍ଦ ବର୍ଣ୍ଣନାରେ ସୀମିତ ଥିଲା ଏବେ କିନ୍ତୁ ଟିଭି ଓ ସିନେମା ପରଦାରେ ଏହାର କାଳ୍ପନିକ ଚିତ୍ର ଦେଖିବାକୁ ମିଳୁଛି । ଅର୍ଥାତ ଆମର ପୂର୍ବପୁରୁଷ ଆମ ପରି ଧେଡ଼ିଆ ନ ହୋଇ ମହାକାୟ ଓ ମହାବଳୀ ଥିଲେ । ମଝିରେ ମଝିରେ ପୁରାତନ ଉଚ୍ଚ କଙ୍କାଳ ଉଦ୍ଧାର ଏହି କଥାକୁ ଆହୁରି ଦୃଢ଼ କରିଥାଏ ।

ପୂର୍ବରୁ ମଣିଷମାନେ କାଳେ ତାଳଗଛ ପରି ଉଚ୍ଚ ହେବା ସହ ସେହି ଅନୁସାରେ ମଜବୁତ୍ ଓ ତାଗଡ଼ା ଥିଲେ ! ସେଥିପାଇଁ ବୋଧେ ସେତେବେଳେ ବିଜୁଳି ସରବରାହ ବ୍ୟବସ୍ଥା ନଥିଲା । କାରଣ ଯଥେଷ୍ଟ ଉଚ୍ଚରେ ତାର ଟାଣି ନଥିଲେ ଅଧିକାଂଶଙ୍କର ଶରୀର ବିଦ୍ୟୁତ୍ ସଂସ୍ପର୍ଶରେ ଆସି ଅକାରଣରେ ପ୍ରାଣ ଯାଇଥାଆନ୍ତା । ପରେ ପରେ ଆମେ ମଧ୍ୟ ହଇରାଣ ହୋଇ ଥାଆନ୍ତେ । ଏତେ ଉଚ୍ଚରେ ଲାଇନି ତାର ଯାଇଥିଲେ ଆମେମାନେ ହୁକ ପକେଇ ବିଜୁଳି ଚୋରି କରିବା ପାଇଁ ଏତେ ବଡ଼ ବାଉଁଶ କେଉଁଠୁ ଆଣି ଥାଆନ୍ତେ ? ?






ଉଚ୍ଚତା ସହ ସେବର ଲୋକମାନଙ୍କର ଓଜନ ମଧ୍ୟ ଅଧିକ ହୋଇଥିବ । ସେଥିପାଇଁ ବୋଧେ ଗାଡ଼ି ତିଆରି ନକରି ପାଦରେ ଚାଲିଚାଲି ଯାଉଥିଲେ ! ଏଡ଼େ ବଡ଼ ଶରୀରକୁ କୋଉ ଗାଡ଼ି ସମ୍ଭାଳନ୍ତା କହିଲେ ? ମୋର ବାଲ୍ୟକାଳରେ ଆମର ପୂର୍ବପୁରୁଷଙ୍କର ଏମନ୍ତ ଶରୀର ସମ୍ପର୍କରେ ଶୁଣି ବିଚଳିତ ହୋଇ ପଡ଼ିଥିଲି । ମନେ ମନେ ଇଶ୍ୱରଙ୍କୁ ଧନ୍ୟବାଦ ଜଣେଇ କହିଥିଲି କି ପ୍ରଭୁ ଭଲ କରିଚ, ତମେ ଆମ ଜେଜେବାପା ଜେଜେମାଆଙ୍କୁ ଏତେ ବଡ଼ କରିନ ! ସେମିତି ହୋଇଥିଲେ, ବିଚରାମାନେ ଛୋଟ ଘରଟିରେ ଦୂର୍ବଳ ଖଟିଆ ଗୁଡ଼ିକରେ କେମିତି ଶୋଇଥାଆନ୍ତେ ? ?

ସେତେବେଳେ ଖାଦ୍ୟ ମଧ୍ୟ ସେମିତି ଚପାକଷ କରି ଖାଉଥିବେ । ମୋତେ କିନ୍ତୁ ବିଶ୍ୱାସ ହେଉନି । ଏବେ ମଣିଷ ତ ଟିକେ ଅଧିକ ଖାଇଦେଲେ ଗ୍ୟାସ୍ ହୋଇଯାଉଛି ! ସେତେବେଳେ ଅଧିକ ଖାଦ୍ୟଶସ୍ୟ ଅମଳର ପଦ୍ଧତି ମଧ୍ୟ ଉଦ୍ଭାବନ ହୋଇନଥିଲା ! ଦରିଦ୍ରଙ୍କ ପାଇଁ ଶସ୍ତା ଚାଉଳ ବ୍ୟବସ୍ଥା ମଧ୍ୟ ନଥିଲା ! ! ଲୋକଗୁଡ଼ା ତଥାପି ଏତେ ବଡ଼ ହୋଇପାରିଥିଲେ କେମିତି ?

ଏକଥା ସତ୍ୟ କି ପୁର୍ବ ତୁଳନାରେ ମଣିଷର ଶରୀର ଛୋଟ ହେବାରେ ଲାଗିଛି । ମୋତେ ଲାଗୁଛି ଏହା ଇଶ୍ୱରଙ୍କର ଯୋଜନାବଦ୍ଧ କୌଶଳ । ପୃଥିବୀରେ ଜାଗା ତ ବଢୁ ନାଇଁ, ଜନସଂଖ୍ୟା କିନ୍ତୁ ଘୁ ଘୁ ବଢ଼ିଚାଲିଛି । ତେଣୁ ସେଇ ସମାନ ଜାଗାରେ ଅଧିକ ଲୋକଙ୍କୁ ଥାଇଥାନ ପାଇଁ ଇଶ୍ୱର ସାଇଜି ଛୋଟେଇ ଦେଉଥିବେ । ପୂର୍ବରୁ ସିଏହେଲେ ଆମ ଶରୀର ସିନା ଛୋଟ ହୋଇଛି, ବହପ କିନ୍ତୁ ବଢ଼ି ଚାଲିଛି । ପୂର୍ବକାଳର ବିଶାଳବପୁଧାରୀ ଦୈତ୍ୟମାନଙ୍କର ଅଦୈାତି ତୁଳନାରେ ଏବର କ୍ଷୀଣକାୟ ମଣିଷମାନଙ୍କର ଔଦ୍ଧତ୍ୟ ମଧ୍ୟ କିଛି କମ୍ ନୁହେଁ ।

ଖାଲି କଣ ଶରୀର ଆମର ମନ ମଧ୍ୟ ଦିନକୁ ଦିନ ଛୋଟ ହେବାରେ ଲାଗିଛି । କେତେ ଛୋଟବୁଦ୍ଧି କରି ସହଜରେ ଉଦ୍ଦେଶ୍ୟ ସାଧନ କରି ହେବ ସେଇ






ପ୍ରୟାସରେ ମଣିଷ ଦିନରାତି ବ୍ୟସ୍ତ । ବଡ଼ ମନ୍ଦିରକୁ ନ ଯାଇ ଘରକୋଣରେ ଛୋଟିଆ ମନ୍ଦିରଟିଏ ଗଢ଼ି ସେଥିରେ ଛୋଟ ଛୋଟ ପ୍ରତିମା ରଖି ପୂଜା କରିବା ଏକ ପ୍ରଥାରେ ପରିଣତ ହେଲାଣି । ବଡ଼ ବଡ଼ ପାପକର୍ମ କରିଥିବା ମଣିଷ କହୁଛି ଏମିତି ଛୋଟ ଛୋଟ କଥାକୁ ଧରିବସିଲେ କଣ ଜୀବନରେ ବଡ଼ ହୋଇପାରିବ ! ଆଜିର ମନ୍ତ୍ର ହେଲା - ବଡ଼ ହେବାପାଇଁ କରୁ ଯେବେ ଆଶା, ଛୋଟକାମକୁ ତୁ କରହେ ଭରଷା !

ଛୋଟ ହିଁ ସୁନ୍ଦର ବୋଲି ଗୋଟେ ଅଘୋଷିତ ନୀତିକୁ ଆମେ ସମସ୍ତେ ସସମ୍ମାନେ ଗ୍ରହଣ କରି ନେଇଛେ । କ୍ଷମତାଶାଳୀଙ୍କର ହୃଦୟ ଛୋଟ, ହିରୋଇନୀଙ୍କର ପୋଷାକ ଛୋଟ, ବଡ଼ବାବୁଙ୍କ କମ୍ପ୍ୟୁଟର ଛୋଟ, ସାହେବଙ୍କର ମନ୍ତବ୍ୟ ଛୋଟ । ମୋଟି ହୋଇଗଲେ କାଳେ ବର ମିଳିବେନି ସେଥିପାଇଁ ଝିଅମାନଙ୍କୁ ଅନେକ ଡାଏଟିଂ ପାଇଁ ଉପଦେଶ ଦେଇଥାଆନ୍ତି । ଖାଲିକଣ ଝିଅ, ପୁଅମାନେ ମଧ୍ୟ ଟିକେ ବଡ଼ ଚେହେରାଧାରୀ ହେଲେ ତାଙ୍କୁ ପଛରେ ଅଘାସୁର ଡାକୁଛନ୍ତି ।

ଛୋଟ ହେଲେ ନାନା ସୁବିଧା । କେହି ନଜାଣି ଗଳିପଶି ଅସାଧ୍ୟ ସାଧନ କରିହେବ । ବଡ଼ ଶରୀରଟିଏ ହୋଇଥିଲେ, ଲୋକେ କହିବେ ହେଇଟି ଦେଖ ଅମୁକ ବାବୁ ସମୁକ ଜାଗାକୁ ଗଲେଣି ! ଛୋଟ ହେଲେ ସର୍ବଦା ମୁହଁ ଉପରକୁ କରି ବାତ୍ ମାରି ହେବ । ବଡ଼ ହେଲେ କିନ୍ତୁ ଆପଣ ଅଧିକାଂଶଙ୍କ ସାମ୍ନାରେ ମୁଣ୍ଡ ନୋଇଁବାକୁ ବାଧ୍ୟ ! ଲୋକମାନେ ପୂର୍ବପରି ମହାବଳୀ ଥିଲେ ଆଜି ଅଟୋରିକ୍ସା ବେପାରର ଆଦୌ ସୁଯୋଗ ହିଁ ନଥାନ୍ତା ।

ଆଜିକାଲି ବଡ଼ହେବା ବିପଦପୂର୍ଣ୍ଣ । ସବୁବେଳେ ସମସ୍ତେ ଟାର୍ଗେଟ୍ କରିବେ । ସେଥିପାଇଁ ଛୋଟ ପିଲାଟିଏ ଦେଖିଲେ ବଡ଼ ମଣିଷଟି ଆଜିକାଲି ଇର୍ଷା କରୁଚି - ଆହା, କାହିଁଗଲା ମୋ ପିଲାଦିନ ! ମୁଁ ଏମିତି ଛୋଟ ହୋଇ ବିନା ଟେନ୍‌ସନରେ ଆଜି ଖେଳି ପାରନ୍ତିକି !




ଗୁରୁତ୍ୱପୂର୍ଣ କଥା ହେଲା ପୂର୍ବକାଳର ମଣିଷମାନଙ୍କର ଶରୀର ସହ ମନ ବି ବଡ଼ଥିଲା । ଏବେ ମଣିଷ ମାନଙ୍କର କିନ୍ତୁ ଶରୀର କ୍ଷୁଦ୍ର ହେବା ସହ ମନ ବି ଛୋଟ ହେବାରେ ଲାଗିଛି । ମୋର ଚିନ୍ତା ହେଲା ପୂର୍ବ ତୁଳନାରେ ଆମେମାନେ ଯେମିତି ଛୋଟ ହୋଇଚାଲିଛେ ପୀଢ଼ି ପରେ ପୀଢ଼ି ଯଦି ଏମିତ ଚାଲେ ମଣିଷ ଦିନେ ପିମ୍ପୁଡ଼ି ଉଚ୍ଚତାର ହେଇଯିବନି ତ ? ? ଅବଶ୍ୟ ସେତେବେଳକୁ ଆମେ କେହି ନଥିବା ତେଣୁ ଆସନ୍ତୁ ଏତେବଡ଼ ଆଶଙ୍କା ନକରି ଚିନ୍ତାକୁ ଟିକେ ଛୋଟେଇ ଦେବା !

ମାର୍ଫତ - ଗାନ୍ଧୀ ପଣ୍ଡା,

କଳାଘର - ଲେମ୍ବୋ, ଡା - ଅଲରା,

ନରସିଂହପୁର, କଟକ

କ୍ରିଂ କ୍ରିଂ- ୯୩୩୮୫୮୧୩୦୯

ଇମେଲ୍: dr.kulangar@gmail.com

# ମା'ର ମମତା



ଜ୍ୟୋତ୍ସ୍ନାରାଣୀ ପଣ୍ଡା

ବିଧବା ହେବା ପରେ କୋମଲର ବେଶଭୂଷାରେ ବେଶୀ କିଛି ପରିବର୍ତ୍ତନ ହୋଇ ନଥିଲା । ମଥାରେ ସିନ୍ଦୁର ବଦଳରେ ଗୋଟିଏ ଛୋଟ ଷ୍ଟୋନ୍‌ର ଟିକିଲି । ହାତରେ ମେଞ୍ଚାଏ ପାଣିକାଚ ଓ ନାଲି ଶଙ୍ଖା ବଦଳରେ ପଟେ ପଟେ ସୁନା ଚୁଡ଼ି । ନାଲି ଶାଢ଼ୀ ପିନ୍ଧା ଛାଡ଼ି ଦେଇଛି । ଏମିତି ବି ସେ ଶାଢ଼ୀ କମ୍ ପିନ୍ଧେ । ପ୍ରାୟତଃ ଚୁଡ଼ିଦାର ସେଟ ପିନ୍ଧିବାକୁ ଭଲ ପାଏ । ବବ୍ କଟ । ପାଦରେ ହାଇହିଲ୍ । ବୟସ ପାଖାପାଖି ଚାଳିଶ ହେବ । କିନ୍ତୁ ସେ ନିଜ ବୟସର ଅଧା ବୟସ ଭଳି ଦେଖାଯାଏ । ଗୋଟିଏ ଝିଅ ଗୋଟିଏ ପୁଅ । ଝିଅ ନବମ ଶ୍ରେଣୀରେ ପଢୁଛି, ପୁଅର ଷଷ୍ଠ ଶ୍ରେଣୀରେ । କୋମଲର ଷ୍ଟାଇଲ୍ ଦେଖି କଲୋନୀର ସ୍ତ୍ରୀ ଲୋକମାନଙ୍କଠାରୁ ଆରମ୍ଭ କରି ପିଲା ପର୍ଯ୍ୟନ୍ତ, ସମସ୍ତେ ତାକୁ ପରକଟି ଦିଦି ବୋଲି କୁହନ୍ତି ।

ବିବାହ ପୂର୍ବରୁ ମଧ୍ୟ କୋମଲ ଏମିତି ହିଁ ଦୁଃସାହସୀ ସ୍ୱଭାବର ଥିଲା । ସବୁବେଳେ ପୁଅ ପିଲାଙ୍କ ଡ୍ରେସ ପିନ୍ଧେ । ଏମିତିକି ହାଇସ୍କୁଲକୁ ମଧ୍ୟ ପୁଅ ପିଲାଙ୍କ ପ୍ୟାଣ୍ଟ ସାର୍ଟ ପିନ୍ଧି ଯାଏ । ପ୍ରଥମେ ପ୍ରଥମେ ଯେତେବେଳେ କ୍ଲାସକୁ ଗଲା ସେ ପୁଅ ପିଲାମାନଙ୍କ ସହିତ ଗୋଟିଏ ବେଞ୍ଚରେ ବସୁଥିଲା । ବାରମ୍ବାର ସାର୍‌ମାନଙ୍କ କହିବା ପରେ ଝିଅ ପିଲାମାନଙ୍କ ସହିତ ବସିଲା । ପାଠଶାଠ ସେମିତି ଭଲ ହେଉ ନଥିଲା ତା'ର । କୌଣସି ପ୍ରକାରେ ମାଟ୍ରିକ ଟା ପାସ କରିଗଲା । ହେଲେ ଘରେ ତାକୁ ଆଉ ଅଧିକ ନ ପଢ଼ାଇ ଶୀଘ୍ର ବାହା କରାଇଦେଲେ ।






ଅଶୀ ଦଶକରେ ବିବାହପରେ ସ୍ୱାମୀଙ୍କ ପ୍ରେରଣାରେ ସେ ନିଜର ଗ୍ରାଜୁଏସନ ଶେଷ କଲା । ତା ସହିତ ଟେଲରିଂ, ରୋଷେଇ, ବିଉଟି କୋର୍ସ୍ ମଧ୍ୟ ଶିଖିଲା । ସ୍ୱାମୀଙ୍କର ବିଜୟୀ ସୁପର ଗାଡି ଚଲାଇ ସେଥିରେ ମଧ୍ୟ ମାଷ୍ଟର ପାଲଟି ଗଲା ।

ରାଉରକେଲା ଷ୍ଟିଲ ପ୍ଲାଣ୍ଟରେ କାର୍ଯ୍ୟରତ ଅବସ୍ଥାରେ ତା'ର ସ୍ୱାମୀଙ୍କର ମୃତ୍ୟୁ ହୁଏ । ସେତେବେଳକୁ ଝିଅ ଆଠ ବର୍ଷର ଆଉ ପୁଅ ପାଞ୍ଚ ବର୍ଷର । ସେଠାରେ ନିଜର ବୋଲି ତ କେହି ନଥିଲେ । ସ୍ୱାମୀଙ୍କ ମୃତ୍ୟୁରେ ସେ ପୁରା ଭାଙ୍ଗିପଡ଼ିଲା । ସବୁ କାମରେ ସ୍ୱାମୀ ତାକୁ ସହଯୋଗ କରୁଥିଲେ । ଆଗକୁ ବଢ଼ିବା ପାଇଁ ପ୍ରେରଣା ଦେଉଥିଲେ । ଛୋଟ ପିଲାମାନଙ୍କୁ ନେଇ ଏତେ ଲମ୍ବା ଜୀବନ, ସ୍ୱାମୀଙ୍କ ବିନା ସେ କିପରି ବଞ୍ଚିବ ? ଆଉ ଆଗକୁ ସେ କିଛି ଭାବି ପାରିଲା ନାହିଁ ।

ନିଜର ଯୋଗ୍ୟତା ଅନୁସାରେ କମ୍ପାନୀରେ କୋମଲକୁ ସାନ୍ତ୍ୱନାମୂଳକ ଚାକିରୀ ଖଣ୍ଡେ ମିଳିଗଲା । ଟାଉନସିପର ଇଷ୍ଟେଟ ବିଭାଗରେ କ୍ଲରିକାଲ ପୋଷ୍ଟ । ପିଲାମାନଙ୍କୁ ବଡ଼ କରିବା ପାଇଁ ସେ ପୁଣି ନିଜର ଅଣ୍ଟା ଭିଡ଼ିଲା । ମନକୁ ଟାଣ କଲା । ଚାକିରୀ ସହିତ ପିଲାମାନଙ୍କର ଯତ୍ନ । ସଂସାରର କର୍ମବ୍ୟସ୍ତତା ସହିତ ଜୀବନର ଗାଡ଼ି ଆଗକୁ ଆଗକୁ ଗଡ଼ି ଚାଲିଲା ।

କୋମଲ ରହୁଥିବା ଲାଇନର ପଛ ଲାଇନରେ ରହେ ଗୋପାଳ । ବୟସ ସତର ଅଠର । ନୂଆ ନୂଆ କଲେଜ ଯାଉଛି । ଦେଖିବାକୁ ସୁନ୍ଦର । ପିଲାଟା ଭଲ, କିନ୍ତୁ ତା'ର ଟିକେ ମତିଭ୍ରମ ଥିଲା ପରେ ଲାଗେ । ନୂତନ ଯୌବନର ସ୍ପର୍ଶରେ ମତୁଆଲା । ତା'ର ଦୃଷ୍ଟି କୋମଲ ଉପରେ । ଅଧା ସମୟ ଯାଏ ଆଇନା ସାମ୍ନାରେ । ଆଉ ଅଧା ସମୟ ଯାଏ ପରକଟି ଦିଦିକୁ ଲାଇନ ମାରିବାରେ । ସେ ମନେମନେ ଭଲ ପାଇ ବସିଛି କୋମଲକୁ । ନିଜର ବୟସ ଆଉ କୋମଲର ବୟସ ଭିତରେ ଥିବା ତାରତମ୍ୟ ବିଷୟରେ ସେ କେବେ ଚିନ୍ତା କରି ନାହିଁ । ଏ ବିଷୟରେ ସମାଜ କ'ଣ ଭାବିବ, ତାହା ମଧ୍ୟ ମୁଣ୍ଡରେ ପୁରାଇ ନାହିଁ । କିଏ କ'ଣ କହୁ ବା ନ






କହୁ ସେଥିପାଇଁ କାହାରିକୁ ତା'ର ଖାତିର ନ ଥିଲା । ଦିନରେ ଅତି କମରେ ଥରେ ଦି'ଥର କୋମଲକୁ ଦେଖିବା ତା'ର ନିଶା ପାଲଟି ଯାଇଥିଲା । କୋମଲ ଅଫିସ ଯିବା ଆସିବା ସମୟରେ ସେ ସାଇକେଲ ଖଣ୍ଡେ ଧରି ସେହି ଗଳିରେ ଚକ୍କର କାଟେ ।

ସେଦିନ ଅଳ୍ପ ଅଳ୍ପ ବର୍ଷା ହୋଇ ଛାଡ଼ି ଯାଇଛି । ଗୋପାଳ ସାଇକେଲରେ କଲେଜରୁ ଘରକୁ ଫେରୁଛି । ମନ ଭିତରେ କୋମଲକୁ ଦେଖିବାର ନିଶା । ଅନ୍ୟମନସ୍କ ହୋଇ ସାଇକେଲକୁ ଟର୍ଣ୍ଣିଂ ମୋଡ଼ିବା ବେଳେ କାଦୁଅରେ ସ୍ଲିପ କରିଗଲା । ଗୋପାଳ ତଳେ ପଡ଼ିଗଲା । ସାମ୍ନାପଟରୁ ଆସୁଥିବା ଏକ ଅଟୋ ତାକୁ ଧକ୍କା ଦେଇ ଚାଲିଗଲା । ତା'ର ମୁଣ୍ଡରେ ଯୋରରେ ଆଘାତ ଲାଗିଲା । ମୁଣ୍ଡଫାଟି ରକ୍ତ ପିଚପିଚ ହୋଇ ବାହାରୁଛି । ସେ କଷ୍ଟରେ ଛଟପଟ ହେଉଛି । ବଞ୍ଚାଅ ବଞ୍ଚାଅ ବୋଲି ଚିତ୍କାର କରୁଛି । ଧୀରେ ଧୀରେ ଲୋକମାନେ ତା' ଚାରିପଟେ ଘେରି ଗଲେଣି । କିନ୍ତୁ ପୋଲିସ, କୋର୍ଟ ଭୟରେ କେହି ତା ଦେହରେ ହାତ ଲଗାଉ ନାହାନ୍ତି । ଏହି ସମୟରେ ନିଜ ସ୍କୁଟରରୁ ଓହ୍ଲାଇ ଭିଡ଼କୁ ଆଡ଼େଇ ଗୋପାଳ ଗୋପାଳ ଡାକି ତା ନିକଟରେ ପହଁଚିଲା କୋମଲ । ଏକ ପରିଚିତ କଣ୍ଠସ୍ୱର ଗୋପାଳର କାନରେ ପଡ଼ିଲା । ପ୍ରଚୁର ରକ୍ତସ୍ରାବ ହୋଇ ଶରୀର ଅବଶ ହୋଇ ଗଲାଣି । ତାକୁ ସବୁକିଛି ଅନ୍ଧାରୁଆ, ଜାଲୁଜାଲୁଆ ଦେଖା ଯାଉଛି । କୋମଲ ଗୋପାଳର ମୁଣ୍ଡକୁ କୋଳରେ ରଖି ରକ୍ତ ବାହାରୁଥିବା ସ୍ଥାନରେ ନିଜର ଚୁନିକୁ ଚାପି ଧରିଲା । ଏବେ ବି ତା'ର ହୋସ ଅଛି । ଗୋପାଳ ବଲବଲ କରି କୋମଲର ମୁହଁକୁ ଚାହିଁ ରହିଛି । କୋମଲ ନିଜ କାମ କରିବା ସହିତ ଯୋରରେ ପାଟି କରୁଥାଏ । ଆରେ ଭାଇ ଛିଡ଼ା ହୋଇ କ'ଣ ସବୁ ଦେଖୁଛ ! ଗାଡ଼ି ଡାକ ହସ୍ପିଟାଲକୁ ଯେତେଶୀଘ୍ର ନେଇଯିବା । ଏ ପରା ମୋ ପୁଅ ।

ଗୋପାଳର ଏ ପର୍ଯ୍ୟନ୍ତ ମନେ ଅଛି ପରକଟି ଦିଦିଙ୍କ ଡ୍ରେସ ପୁରା ରକ୍ତରେ ଭିଜି ଯାଇଥିଲା । କେହିଜଣେ ବ୍ୟକ୍ତି ଅଟୋରିକ୍ସାଟିଏ ଡାକି ଆଣିଲେ । ଅଟୋରେ






ଦିଦି ଆଉ ସେ । ରିକ୍ସାରେ ମଧ୍ୟ ସେହିପରି ମୁଣ୍ଡକୁ କୋଳରେ ରଖି କ୍ଷତ ସ୍ଥାନକୁ ଚାପି ଧରି ବସିଥାନ୍ତି ଦିଦି । ମେଡ଼ିକାଲରେ ଗୋପାଳର ଚିକିତ୍ସା ଆରମ୍ଭ ହୁଏ । ଖବର ପାଇ ଘରଲୋକ ମଧ୍ୟ ଆସି ପହଞ୍ଚି ଗଲେ । କିଛିଦିନ ଚିକିତ୍ସିତ ହେବାପରେ ସୁସ୍ଥ ହୋଇ ଘରକୁ ଫେରେ ।

ଏହି କିଛିଦିନ ଭିତରେ କୋମଲ ପ୍ରତି ଗୋପାଳର କାମବାସନା ଏକଦମ ବିଲୁପ୍ତ ହୋଇଯାଇଥିଲା । ଗୋପାଳ ଏବେ ମଧ୍ୟ ବୁଝି ପାରେନା ଯେ ପରକଟି ଦିଦି ତା'କୁ ଯେତେବେଳେ କୋଳରେ ଧରିଲେ ତାକୁ ଯେପରି ଲାଗିଲା ସେ ତା ମା' କୋଳରେ ଶୋଇଛି । ବାତ୍ସଲ୍ୟ ଭାବନା ହଠାତ୍ କିପରି ଜାଗୃତ ହୋଇ ଉଠିଲା । କେମିତି ତା'ର ଦୃଷ୍ଟିକୋଣ ଗୋଟିଏ କ୍ଷଣରେ ବଦଳି ଗଲା, ସେ ଏବେ ମାତୃତ୍ୱର ଶୁଦ୍ଧ ଭାବରେ ପରକଟି ଦିଦିକୁ ଦେଖୁଛି ।

ଘଟଣାର ପଚିଶ ବର୍ଷ ପରେ ଗୋପାଳ ଏବେ ପ୍ରୌଢ଼ । ଏକ କମ୍ପାନୀରେ ଅଫିସର । ନିଜ କର୍ମମୟ ଜୀବନରେ ସମୟ ଟିକିଏ ମିଳିଲେ ମନକୁ ହାଲୁକା କରିବା ପାଇଁ ସକାଳ ଓ ସନ୍ଧ୍ୟାରେ ପାର୍କରେ ବୁଲାବୁଲି କରେ । ପାର୍କର ସିମେଣ୍ଟ ବେଞ୍ଚରେ ବସି ଅନେକ କଥା ବିଚାର କରେ । ସେଠାରେ ଅନେକ ମହିଳାଙ୍କୁ ଦେଖେ । ଯୁବତୀମାନଙ୍କୁ ବ୍ୟାୟାମ କରିବାର ଦେଖେ । ସେ ମନେମନେ ହସେ । ଛୋଟବେଳେ ସେ କିପରି ଏକ ବଡ଼ ପ୍ରହେଳିକାର ସମାଧାନ ପନ୍ଥା ପାଇପାରିଥିଲା, ସେ ବିଷୟରେ ଭାବେ । ଆଜି ସେ ଭଲଭାବରେ ଜାଣିପାରିଛି ଯେ ନାରୀର ମୂଳଭାବ ହେଉଛି ମାତୃତ୍ୱ । ରମ୍ଭା, ମେନକା ଆଦି ଅପସରାଙ୍କ ଭଳି ସେ ଯେତେ ସୁନ୍ଦର ହୋଇଥାଉ ନା କାହିଁକି ହୃଦୟ ଭିତରେ ପ୍ରତ୍ୟେକ ନାରୀ ଏକ ମା' । ସେହି ମା'ର ମାତୃତ୍ୱ କେବଳ ନିଜ ସନ୍ତାନମାନଙ୍କ ମଧ୍ୟରେ ସୀମିତ ରହି ନ ଥାଏ, ପ୍ରତ୍ୟେକ ଅସହାୟ, ଦୁର୍ବଳ, ବିବଶ ଅବସ୍ଥାରେ ଥିବା ଅନ୍ୟମାନଙ୍କର ସନ୍ତାନମାନଙ୍କ ପାଇଁ ମଧ୍ୟ ଥାଏ ।






ଦୁନିଆଁରେ ଘଟୁଥିବା ଛୋଟବଡ଼ ଦୁଃଖକୁ ଜଣେ ନାରୀ ପୁରୁଷଠାରୁ ଦଶଗୁଣ ଅଧିକ ଅନୁଭବ କରିଥାଏ । ସେ ଏହା କଳ୍ପନା କରି ଅଧିକ ସମ୍ବେଦନଶୀଳ ହୋଇଉଠେ ଯେ, ଯଦି ଏହି ଘଟଣା ମୋ ପୁଅ କିମ୍ବା ଝିଅ ସହିତ ଘଟିଥା'ନ୍ତା ? ତେବେ କ'ଣ ହୋଇଥା'ନ୍ତା ? ଏ କଥା ଭାବି ତା'ର ଦେହ ଶିହରୀ ଉଠେ । ସେ କାନ୍ଦି ପକାଏ । ଆଉ ଦୁନିଆଁ କୁ ଲାଗେ ଯେ ମହିଳା ଦୁର୍ବଳ ।

ଏହି ସବୁ କଥା ବିଚାର କରି ଗୋପାଳ ହସିଉଠେ । ମନକୁ ମନ କହିପକାଏ, "ହେ ବିଶ୍ୱର ଭ୍ରମିତ ପୁରୁଷମାନେ ! ନାରୀର ହୃଦୟ ଦୁର୍ବଳ ନୁହେଁ, ସେ ତ ସକଳ ଶକ୍ତିର ଆଧାର କାରଣ, ସେ ହିଁ ତ କେବଳ ଜଣେ ମା' ।"

====================

[ ଅନୁବାଦିତ ଗଳ୍ପ ]

ରାଉରକେଲା, ଓଡ଼ିଶା

# ପ୍ରେମ ବିବାହ



ସୁବଳ ମହାପାତ୍ର

ସକାଳୁ ସକାଳୁ ମର୍ଣ୍ଣିଙ୍ଗ୍ ୱାକ୍‌ରୁ ଫେରି ଅଧା ଖୋଲା ଦରଜା ଦେଖି ଧର୍ମେନ୍ଦ୍ରବାବୁ ଟିକେ ଅଟକି ଗଲେ । ଘରେ ଚୋର ପଶିଛି କି ଆଉ । ଏତେ ସକାଳୁ ତ କେହି ବି ଉଠିବେନି । ସେ ତ ତାଲା ପକେଇ ଯାଇଥିଲେ । ଏବେ ବି ଚାବି ପଇତାରେ ଝୁଲୁଛି । ହେଲେ କବାଟଟା ଖୋଲା ଅଛି କଣ ପାଇଁ । ଘରେ ପଶିଲା ବେଳକୁ ବଂଶଯାକ ଲୋକ ଦୁଆରେ ଠୁଳ । କ'ଣ ହେଲା କାହାର, ଚିନ୍ତାରେ ପଡ଼ିଗଲେ ସେ । ସମସ୍ତଙ୍କ ମୁହଁକୁ ଚାହୁଁଥାନ୍ତି ସେ, କିନ୍ତୁ କେହି ବି କିଛି କହୁ ନଥାନ୍ତି । ନାତି ଟୋକା ବୀର, ମୁଣ୍ଡ ତଳକୁ କରି ଠିଆ ହୋଇଥାଏ । ତା ବାପା ହାତରେ ଗୋଟେ ରୁଲ ବାଡ଼ି । ତା ମା ଉର୍ମିଳା, ଖୁଡ଼ି ସୁଶୀଳା ଆଉ ଧର୍ମେନ୍ଦ୍ରବାବୁଙ୍କ ସ୍ତ୍ରୀ ଦମୟନ୍ତୀ ମୁହଁରେ ଲୁଗା ଦେଇ ଠିଆ ହୋଇଥାନ୍ତି । ଆଖିରୁ ଲୁହ ବୋହୁଥାଏ । ଧର୍ମେନ୍ଦ୍ରବାବୁଙ୍କୁ ଦେଖି ବୀରର ଟିକେ ହୋସ ଆସିଲା । ବୀର ପାଖରେ ଗୋଟେ ଝିଅ ଠିଆ ହୋଇଥାଏ । ଧର୍ମେନ୍ଦ୍ର ବାବୁ ସେ ଝିଅକୁ କେବେ ଦେଖି ନଥାନ୍ତି । କଥା ବୁଝୁ ବୁଝୁ ବୀର ଗୋଟେ ଝିଅକୁ ଧରିକି ପଳେଇ ଆସିଛି । ବାପା ତାର ଠେଙ୍ଗା ଧରି ଠିଆ ହୋଇଛି । କଣ ନା ତାକୁ ଘରେ ପୁରେଇବନି । ଘରର ପରିପାର୍ଶ୍ୱିକ ଅବସ୍ଥା ଦେଖି ଲାଗୁଥାଏ ଆଜି କିଛି ଗୋଟେ ହେଇଯିବ ।

ଧର୍ମେନ୍ଦ୍ରବାବୁଙ୍କ ବଡ଼ ପୁଅ ରତନ କହିଲା, "ବାପା, ତମେ ବୁଝ, ଆମେ ଆଉ ପାରିବୁନି । ଆଜିକାଲିର ଟୋକା ସବୁ କିଛି ନବୁଝି ନଶୁଝି କଣ ସବୁ କରୁଛନ୍ତି ଦେଖ । ମୁଁ ଯାଉଛି ।"






ଧର୍ମେନ୍ଦ୍ରବାବୁ କାହାକୁ କଣ କହିବେ ? ଏଣୁ ମାଇଲେ ଗୋହତ୍ୟା, ତେଣୁ ମାଇଲେ ବ୍ରହ୍ମହତ୍ୟା । ବୀରକୁ କଣ କହିଲେ, ସେ ଯେମିତିଆ ପିଲା ଘର ଛାଡ଼ି ପଳେଇବ । ଏପଟେ ରତନ କାହାକୁ ବି ଘରେ ପୁରେଇବାକୁ ରାଜି ନୁହଁ । ଅଗତ୍ୟା ଅବସ୍ଥା ସମ୍ଭାଳିବାକୁ ଧର୍ମେନ୍ଦ୍ରବାବୁ କହିଲେ, ଆରେ ପିଲା ଦି'ଟା ସେତେବେଳୁ ଠିଆ ହେଇଛନ୍ତି ଆଗ ସାଷ୍ଟାଙ୍ଗ ହବାକୁ ଦେ । ତା'ପରେ ବୁଝିବା କ'ଣ ହେଇଛି । ମୁଁ ବି ଏତେ ବାଟ ଚାଲିକି ଆସିଛି ମୋ ଧଇଁ ବାହାରି ଗଲାଣି । ମୋ ପାଇଁ ଆଗ ପାଣି ମୁନ୍ଦେ ଆଣିଲ । ବଡ଼ବୋହୂ ପାଣିଗ୍ଲାସେ ଆଣି ଧରେଇ ଦେଲା । ସମସ୍ତଙ୍କୁ ଗହଳି ଭାଙ୍ଗିବାକୁ କହି ସେ ଚୌକିରେ ବସି ପଡ଼ିଲେ । ସମସ୍ତେ ରାଗ ତମ ତମ ହୋଇ ନିଜ ନିଜ ରୁମରେ ପଶିଲେ । ବୀର ଆଉ ସେ ଝିଅ ସେଇମିତି ମୁଣ୍ଡ ତଳକୁ କରି ଠିଆ ହୋଇଥାନ୍ତି ।

ଝିଅକୁ ପାଖକୁ ଡାକିଲେ ଧର୍ମେନ୍ଦ୍ରବାବୁ । ପଚାରିଲେ ତୋ' ନାଁ କ'ଣ ? ଝିଅଟି କହିଲା, "ସମ୍ଭାବନା । ସମ୍ଭାବନା ମହାନ୍ତି ।" ଧର୍ମେନ୍ଦ୍ର ବାବୁ ବୁଝିଗଲେ କଥା କ'ଣ । ଝିଅ ଆମ ଜାତିର ନୁହଁ । ଆଉ ଗୋଟେ ଭିତିରିଆ କଥା ବି ଅଛି । ବଡ଼ ବୋହୁଟା ଟିକେ ଲୋଭି । ପୁଅ ବାହାଘର କରି ଯୌତୁକ ଆଣିଥାନ୍ତା କିନ୍ତୁ ଏବେ ଆଉ ସେଟା ହବନି । ସେଥିପାଇଁ ଏତେ ନାଟ । ଆଜିକାଲି ଯୌତୁକଜନିତ ହତ୍ୟା ଆଉ ବଧୂ ନିର୍ଯ୍ୟାତନାର ଦୃଶ୍ୟସବୁ ତାଙ୍କ ଆଖିକୁ ଜଳ ଜଳ ହୋଇ ଦେଖାଗଲା । ଫି ଦିନ ପେପରରେ ପଢ଼ି ପଢ଼ି ଏଗୁଡ଼ାକ ସବୁ ତାଙ୍କର ମାନସପଟରେ ଉଙ୍କି ମାରିଲେ । ସେ କିନ୍ତୁ ଯୌତୁକର ଘୋର ବିରୋଧୀ । ଦି'ଟା ପୁଅଙ୍କୁ ବାହା କରି ମଧ୍ୟ କାହାଠୁ ବି କାଣି କଉଡ଼ିଟିଏ ସେ ଆଣି ନାହାନ୍ତି । ବଡ଼ବୋହୁ କିଛି ଯୌତୁକ ନ ଆଣିଥିଲେ ବି ପୁଅ ଜନ୍ମକରିଛି ଯେତେବେଳେ ଯୌତୁକ ପ୍ରତି ଲୋଭ ତା'ର ଟିକେ ଅଧିକ । କିନ୍ତୁ ଧର୍ମେନ୍ଦ୍ରବାବୁଙ୍କ ମୁହଁରେ ପଶି କିଛି କହିପାରେନି । ସାନପୁଅ ଯତୀନର ଗୋଟେ ଝିଅ, ତେଣୁ ସେମାନେ ସ୍ୱାମୀ ସ୍ତ୍ରୀ ଦି ଜଣ ଯୌତୁକ ବିରୋଧୀ । ଏପଟେ କିନ୍ତୁ ଯୌତୁକ ସହ ମାମଲାଟା ଆଉ ଟିକେ ଅଧିକ । ଜାତି ଅଲଗା ।




ଲୋକେ କଣ କହିବେ ? ଭାବୁ ଭାବୁ ବୀର ଆଉ ସମ୍ଭାବନାକୁ ଭିତରକୁ ଯିବାକୁ ନିର୍ଦ୍ଦେଶ ଦେଲେ । ସେ ଦିହେଁ ଚାଲିଗଲା ପରେ ଧର୍ମେନ୍ଦ୍ରବାବୁ ମୁଣ୍ଡରେ ହାତ ଦେଇ ବସିପଡ଼ିଲେ । ୫୦ବର୍ଷ ତଳର ଅବସ୍ଥା ଯେ ପୁଣି ଆସି ପହଞ୍ଚିବ ଏକଥା ସେ ସ୍ୱପ୍ନରେ ବି ଭାବି ନଥିଲେ ।

ଗାଁରେ ଥିଲାବାଲା ଘର ତାଙ୍କର । ବାପା ହୃଦାନନ୍ଦ ମିଶ୍ର, ପାଞ୍ଚ ଲୋକ ଦେଖିଲେ ମୁଣ୍ଡିଆ ମାରନ୍ତି । କଳିତକରାଳର ମୀମାଂସା ସେ କରନ୍ତି । ଗୋଟିଏ ବୋଲି ପୁଅ ଧର୍ମେନ୍ଦ୍ର ମିଶ୍ର । ପାଠ ପଢ଼ିବାକୁ ସହର ଆସିଲେ । ପଢୁ ପଢୁ ପ୍ରେମ କରିବସିଲେ ଦମୟନ୍ତୀଙ୍କୁ । ପିଲାବେଳ, ପ୍ରେମ କଣ ନ ଜାଣିଲେ ବି ଦମୟନ୍ତୀ କେମିତି ଭଲ ଲାଗିବାକୁ ଲାଗିଲେ । ଗୋଟିଏ କ୍ଲାସ, ସାଙ୍ଗ ହଉ ହଉ କେବେ କେମିତି ପ୍ରେମ ହେଇଗଲା ଜଣା ନାହିଁ । କଲେଜ ସରିଲା ବେଳକୁ କେମିତି ଗୋଟେ ଖାପ ଛଡ଼ା, ଖାପ ଛଡ଼ା ଲାଗିଲା । କହୁ କହୁ "ଆଇ ଲଭ ୟୁ" କହିଦେଲେ । କିନ୍ତୁ ତା'ପରେ ଯେ ଏତେ କଥା ଘଟିଯିବ ସେ ତା'ର କଳନା କରି ନଥିଲେ ।

ପଢ଼ାସାରି ଘରକୁ ଆସିବା ପରେ ବାପା ମା, ବାହାଘର ପାଇଁ ପ୍ରସ୍ତାବ ଦେଖିବାକୁ ଲାଗିଲେ । ଧର୍ମେନ୍ଦ୍ରବାବୁ ସବୁ ଜାଣିଲା ପରେ କଣ କରିବେ କିଛି ବୁଦ୍ଧି ବାଟ ଦିଶୁ ନଥିଲା ତାଙ୍କୁ । ଦିନେ ସକାଳୁ ସକାଳୁ ସେ ଦମୟନ୍ତୀଙ୍କୁ ଧରି ଘରେ ପହଞ୍ଚି ଗଲେ ଆଉ ବାହା ହେବାକୁ କହିଲେ । ସବୁ ଠିକ ଥିଲା ହେଲେ କାଳ ହେଲା ଜାତି । ଦମୟନ୍ତୀ ଥିଲେ ଖଣ୍ଡାୟତ ଘର ଝିଅ ଆଉ ଧର୍ମେନ୍ଦ୍ର ହେଲେ କୁଳୀନ ବ୍ରାହ୍ମଣ । ବାପା ତ ରୋକଠୋକ ମନା କରିଦେଲେ । ହୋଇପାରିବ ନାହିଁ । ଆରେ ଏ ପାଞ୍ଚ ଖଣ୍ଡ ଗାଁରେ ଲୋକ କଣ କହିବେ ? ଭରଦ୍ୱାଜ ଗୋତ୍ରର କୁଳୀନ ବ୍ରାହ୍ମଣ ବାହାହେବ ଗୋଟେ ଖଣ୍ଡାୟତ ଘରେ ? ନା କେବେ ନୁହଁ ।

ସେପଟେ ଦମୟନ୍ତୀଙ୍କ ଘରେ ଜାଣିଲେ ଝିଅ ଘର ଛାଡ଼ି ଗୋଟେ ବ୍ରାହ୍ମଣ ଟୋକା ସହ ପଳେଇ ଯାଇଛି । ଆଉ କିଛି କରିବାର ନଥିଲା । ସେମାନେ ତ






ଦମୟନ୍ତୀଙ୍କର ଶ୍ରାଦ୍ଧ ଦେଇଦେଲେ । ବାସ, ନା ଏ କୂଳକୁ ଯିବାର ଥିଲା ନା ସେ କୂଳକୁ । ସେଇ ଦିନୁ ଧର୍ମେନ୍ଦ୍ରବାବୁ ଘର ଛାଡ଼ି ଆସିଥିଲେ ଯେ ବାପା ମା' ମଲା ପରେ ଯାଇ ଗାଁକୁ ଗଲେ । ଶେଷରେ ଗାଁ ଲୋକ ବି ବାପାଙ୍କୁ ବୁଝେଇଲେ । ଏବେ ଏସବୁ ଚଳିଲାଣି, ରାଗ ଛାଡ଼ । ଯାହା ହେଲେ ବି ଗୋଟିଏ ବୋଲି ପୁଅ ତମର । ଯାହା ହେଲାଣି ହେଲାଣି । ଏବେ ପୁଅବୋହୁଙ୍କୁ ଘରକୁ ଆଣ । କିନ୍ତୁ ନା, ତାଙ୍କର ଏକା ଜିଦ, ମୁଁ ବଞ୍ଚିଥିଲା ଯାଏଁ ସେ ଖଣ୍ଡାୟତ ଘର ଝିଅ ମୋ ହାଣ୍ଡିଶାଳେ ପଶିବନି । ଗାଁ ଲୋକ ଧର୍ମେନ୍ଦ୍ରଙ୍କୁ ବୁଝେଇ ଶୁଝେଇ ଥରେ ନେଇ କି ଗଲେ ଘରକୁ । ସାଙ୍ଗରେ ଦମୟନ୍ତୀ, ରତନ ଆଉ ଯତୀନ । ବାପା, ନାତି ଦି ଜଣଙ୍କୁ ଘରକୁ ନେଲେ କିନ୍ତୁ ଧର୍ମେନ୍ଦ୍ର ଆଉ ଦମୟନ୍ତୀଙ୍କୁ ବାରଣ୍ଡା ଉପରକୁ ଉଠିବାକୁ ଦେଲେନି । ସେଇଦିନୁ ରତନ ଆଉ ଯତୀନ ଜେଜେଙ୍କ କଥା ବୁଝୁଥିଲେ, ସେ ମଲାଯାଏ । ମା'ର କିଛି କହିବାର ନଥିଲା । ମା ଚାହୁଁଥିଲା ଯେ ପୁଅ ବୋହୁ ଘରକୁ ଆସନ୍ତୁ । କିନ୍ତୁ ବାପାଙ୍କ ଡରରେ ସେ ଚୁପ । ପୁଅକୁ ଦେଖିବାକୁ ଇଚ୍ଛା ହେଲେ, ନାତି ଦୁଇଜଣକୁ ଦେଖି ମନବୋଧ କରୁଥିଲା । ଅଜାଣତରେ ଧର୍ମେନ୍ଦ୍ରବାବୁଙ୍କ ଆଖିରୁ ଦି ଧାର ଲୁହ ବୋହି ଆସିଥିଲା । ଲୁହ ପୋଛି ଧର୍ମେନ୍ଦ୍ରବାବୁ ଟିକେ ସହଜ ହେବାକୁ ଚେଷ୍ଟା କଲେ । ରତନ ଆଉ ଯତୀନ ତ ଆଜି ଯାଏଁ ଜାଣି ନାହାନ୍ତି ଯେ ତାଙ୍କ ମା ଖଣ୍ଡାୟତ ଘର ଝିଅ । ସେମାନେ ଜାଣନ୍ତି ଯେ ବାପା ଛୋଟ ବେଳେ କଣ ଗୋଟେ ଭୁଲ କରିଥିଲେ ବୋଲି ଜେଜେ ତାଙ୍କୁ ତେଜ୍ୟପୁତ୍ର କରିଥିଲେ ।

ଆଜିର ଏ ଅବସ୍ଥାରେ ସେ କଣ କରିବେ ଭାବି ହେଉଥିଲେ । ବଡ଼ପୁଅ ରତନ, ବାପାଙ୍କ ପାଖରେ ରହି ତାଙ୍କ ଗୁଣ ସବୁ ରଖିଛି । ବଡ଼ ଜିଦଖୋର ସେ । ହଁ ତ ହଁ, ନାହିଁ ତ ନାହିଁ । ଆଉ କିଛି ଭାଷା ବୁଝେନି ସେ । ଗାଁର ଜମିବାଡ଼ିଠୁ ଆରମ୍ଭ କରି ଚାକିରୀ ଯାଏ ସେ ସବୁ ବୁଝେ । ସାନ ପୁଅର କିଛି ନଥାଏ । ତା'ର ମାଇରେ ଯାଏ ନି କି ଗାଇରେ ଯାଏନି । ଧୋଇରେ ଯାଏନି କି ମରୁଡ଼ିରେ ଯାଏନି । ଯାହା ହେଲେ ଚଳିବ । ସେ କିଛି ବି ମାନେନି । ବ୍ରାହ୍ମଣ ହେଇକି ବି ତା କାନ୍ଧରେ






କେବେ ପଇତା ନଥାଏ । କହିଲେ କହିବ, "ହଁ ମ, ଯେତେବେଳେ ଦରକାର ପିନ୍ଧି ଦେବିନି । ଚିହ୍ନା ବ୍ରାହ୍ମଣର ପଇତା କଣ ଦରକାର ?"

ବୀର, ବୀରଭଦ୍ର ମିଶ୍ର । ରତନର ପୁଅ ହେଇକି ଏମିତି କରିବ, ଏହା ତାଙ୍କ କଳ୍ପନା ବାହାରେ ଥିଲା । କିନ୍ତୁ ସେ ବି ତ ହୃଦାନନ୍ଦ ମିଶ୍ରଙ୍କ ପୁଅ ହେଇକି ଠିକ ସେଇୟା ହିଁ କରିଥିଲେ । ଏବେ କିନ୍ତୁ ଫଇସଲା ତାଙ୍କୁ ହିଁ କରିବାର ଅଛି । କଣ ଯେ ସେ ନିର୍ଣ୍ଣୟ ନେବେ ସେ ଭାବି ପାରୁ ନଥିଲେ ।

ମଣିଷ ତା' ଜୀବନରେ କେବେ ନା କେବେ ଏମିତି ଏକ ଦୋଛକିରେ ଠିଆ ହୋଇ ଥାଏ, ଯେଉଁଥିରେ ରାସ୍ତା ତ ଦି'ଟା ଥାଏ, କିନ୍ତୁ ଚାଲିବା ପାଇଁ ବାଟ ନଥାଏ । ନା ଏପଟକୁ ଯାଇ ହୁଏ ନା ସେପଟକୁ ଯାଇ ହୁଏ । କାହା ସପକ୍ଷରେ ସେ ରାୟ ଦେବେ ସେ ଭାବି ପାରୁ ନଥିଲେ । ରତନ ତ ରାଗ ତମ ତମ ହେଇ ଅଫିସ ବାହାରି ଗଲା । ସାନ ପୁଅ କେତେବେଳୁ ଅଫିସ ଚାଲି ଗଲାଣି । ଘରେ ଆଜି ଜଳଖିଆ ତିଆରି ବି ହେଇନି । ତାଙ୍କୁ ଭୋକ ଲାଗୁଥିଲା ହେଲେ କାହାକୁ କିଛି କହିବା ଅବସ୍ଥାରେ ନଥିଲେ । ଦମୟନ୍ତୀ ଛତୁଆ ଟିକେ ଗୋଳେଇ ଧର୍ମେନ୍ଦ୍ରବାବୁଙ୍କ ପାଖରେ ଆସି ବସିଲେ । କହିଲେ ଖାଇଦିଅ କଣ ଟିକେ । ବୁଢ଼ାବୁଢ଼ୀ ଦି'ଜଣ କାହାକୁ କିଛି ନ କହିଲେ ବି ବୁଝି ପାରୁଥିଲେ ଅବସ୍ଥା କଣ ଆଉ କଣ ହେବାକୁ ଯାଉଛି । ବାହା ହେଲାପରେ ଦମୟନ୍ତୀ ଆଜି ଯାଏଁ ତାଙ୍କ ବାପଘରକୁ ଯାଇ ନାହାନ୍ତି । ଏପଟେ ବାପା ମା'ଙ୍କ ସ୍ନେହ ବି ପାଇଲେନି ନା ପାଇଲେ ଶାଶୁ ଶଶୁରଙ୍କ ସ୍ନେହ । ଆଖି ଓଦା ହେଇ ଆସୁଥାଏ ତାଙ୍କର । ଖାଲି ଏତିକି କହିଲେ ଛୁଆ ଦି'ଟାକୁ ଆମ ସ୍ନେହରୁ ବଞ୍ଚିତ କରନି । ଧର୍ମେନ୍ଦ୍ରବାବୁ ବୁଝି ପାରୁଥିଲେ କେତେ ଯେ ଯନ୍ତ୍ରଣା ଲୁଚିରହିଛି ଏଇ କଥା ପଦକରେ । ଏବେ ସେ ନିର୍ଣ୍ଣୟ ନେଇସାରିଥିଲେ ଖାଲି ଅପେକ୍ଷା ଥିଲା ସନ୍ଧ୍ୟା ସମୟକୁ ।

ସନ୍ଧ୍ୟାରେ ବଡ଼ପୁଅ, ବୋହୁ, ସାନପୁଅ, ବୋହୁ, ଦମୟନ୍ତୀ, ଯତୀନ ଝିଅ ମାଳା, ସମସ୍ତେ ଆସି ଧର୍ମେନ୍ଦ୍ରବାବୁଙ୍କ ପାଖରେ ପହଞ୍ଚିଲେ । ଧର୍ମେନ୍ଦ୍ରବାବୁ ଆଗରୁ






ବୀର ଆଉ ସମ୍ଭାବନାକୁ ଡାକି ପାଖରେ ବସେଇଥାନ୍ତି । ସମସ୍ତେ ଆସିଲାପରେ ଧର୍ମେନ୍ଦ୍ରବାବୁ ଆରମ୍ଭ କଲେ, "ମୁଁ ଜାଣିଚି ତମେ ମାନେ ସମସ୍ତେ ମୋତେ ମାନ । ମୁଁ ଯାହା କହିବି ମନ ଦେଇ ଶୁଣ । ଆଉ ମୁଁ ଯାହା ନିର୍ଣ୍ଣୟ ନେଇଛି ସେଇଟା ଫାଇନାଲ । ତା' ଉପରେ ମୁଁ କାହା କଥା ବି ଶୁଣିବିନି । ମୋର ନିର୍ଣ୍ଣୟ ହେଲା କାଲି ସକାଳୁ ଆମେ ଝିଅ ଘରକୁ ପ୍ରସ୍ତାବ ନେଇ କି ଯିବା ଆଉ ବାହାଘର ଠିକ କରିକି ଆସିବା । ଏଇ ମାସରେ ଦି ଜଣଙ୍କ ବାହାଘର ହେବ ।"

ରତନ - କିନ୍ତୁ ବାପା..

ସେ ଆଉ କିଛି କହିବା ପୂର୍ବରୁ ଧର୍ମେନ୍ଦ୍ରବାବୁ ତାକୁ ଅଟକାଇ ଦେଲେ ଓ କହିଲେ, "ଆଗ ତୋ' ମା ଆଉ ମୋତେ ଘରୁ ବାହାର କରିଦେ । କାରଣ ତୋ'ମା ଖଣ୍ଡାୟତ ଘରଝିଅ । ବ୍ରାହ୍ମଣ ନୁହଁ । ତୋ ଜେଜେ ବି ସେଇଥିପାଇଁ ମୋତେ ତେଜ୍ୟପୁତ୍ର କରିଥିଲେ ଆଉ ଏବେ ଯାଏଁ ଆମେ ବାପାମା'ଙ୍କ ସ୍ନେହ ପାଇଁ ଝୁରି ହେଉଛୁ । ତମେ ମାନେ ଆଜି ଯାଏଁ ମାମୁଁ ଘର କଣ ଜାଣିନ କାରଣ ତୋ' ମା'ର ଶ୍ରାଦ୍ଧ ସେମାନେ ଦେଇ ସାରିଛନ୍ତି । ମୋ ବାପା, ମଲାଯାଏ ବି ଆମ ଦି ଜଣଙ୍କୁ କ୍ଷମା କରିନଥିଲେ ଆଉ ଘରେ ପୁରେଇ ଦେଉ ନଥିଲେ । ଆରେ ତୋ ମା ଯଦି ଖଣ୍ଡାୟତ, ତା ଔରସରୁ ଜନ୍ମ ନେଇ ତମେ ଦି ଜଣ କେମିତି ବ୍ରାହ୍ମଣ ହେଲ ? ଆଜି କାଲି ବେଳ କାଳ ଯାହା ହେଲାଣି ପୁଅମାନେ ପୁଅମାନଙ୍କୁ ଆଉ ଝିଅମାନେ ଝିଅମାନଙ୍କୁ ବାହା ହେଇ ରହୁଛନ୍ତି । ବୀର ତ ଗୋଟେ ଝିଅକୁ ନେଇ କି ଆସିଛି । ସେ ପୁଣି ଅଛୁଆଁ ଜାତି ନୁହଁ ଛୁଆଁ ଜାତିରୁ ।"

ସମସ୍ତେ ହାଁ କରି ଧର୍ମେନ୍ଦ୍ରବାବୁ ଆଉ ଦମୟନ୍ତୀଙ୍କୁ ଦେଖୁଥିଲେ । ବୀର ଆଉ ସମ୍ଭାବନା ଧର୍ମେନ୍ଦ୍ରବାବୁଙ୍କ ଗୋଡ଼ ତଳେ ପଡ଼ିଗଲେ । ଧର୍ମେନ୍ଦ୍ରବାବୁ ଦୁଇ ଜଣଙ୍କୁ କୋଳେଇ ନେଉ ନେଉ କହିଲେ । କାଲି ସକାଳୁ ସମସ୍ତେ ପ୍ରସ୍ତୁତ ହୋଇଥିବ । ଝିଅକୁ ଝିଅଘରକୁ ନେଇ କି ଯିବାର ଅଛି ।

ଧର୍ମେନ୍ଦ୍ର ବାବୁଙ୍କ ନିଷ୍ପତି ଶୁଣି ଦମୟନ୍ତୀଙ୍କ ମୁହଁରେ ଧାରେ ହସ ଲାଖିରହିଥିଲା ।




# ମୋ ଆପଣାର ଗାଁ



ପ୍ରକାଶ ସାହୁ

ରୋଷେଇଘରୁ ଶୁଣାଗଲା, "ଆରେ ପୁଅ, ଦେଖିଲୁ ସେ ଫୋନ୍‌ଟା କାହାର ଆସିଛି ।" ମୁଁ ଫୋନକୁ ଯାଇ ଉଠେଇଲା ପରେ;

- ମଉସା ନମସ୍କାର ମୁଁ ଆଲୋକ କହୁଛି, ପ୍ରକାଶ ଅଛି କି ?

ଆଲୋକ ମୋ ସାଙ୍ଗ ।

- ଆରେ ଆଲୋକ, ମୁଁ ପ୍ରକାଶ କହୁଛି । କହ କଣ ହେଲା ?

- ତୁ ରିଜଲ୍ଟ ଦେଖିଲୁ ? ଯୋଉ ପରୀକ୍ଷା ଦେଇଥିଲୁ, ତୋର ସିଲେକ୍ସନ୍ ହେଇଯାଇଛି । ଆଉ ଦି'ଟା ମାସରେ ତୁ ଯାଇ ନୌସେନାରେ ଯୋଗ ଦେଇଥିବୁ ।

ଆଲୋକର କଥା ଶୁଣି ମୁଁ ବହୁତ ଖୁସି ହୋଇଗଲି । ଭାରତୀୟ ନୌସେନାରେ ଯୋଗଦେବାପାଇଁ ପ୍ରବେଶିକା ପରୀକ୍ଷା ଦେଇଥିଲି । ଯା ହେଉ ମୁଁ ସଫଳ ହୋଇଥିଲି, କିନ୍ତୁ ହଠାତ ମନରେ ଆଉ ଏକ ଭାବନା ଆସିଲା । ନୌସେନାରେ ଯୋଗ ଦେବାପାଇଁ ମୋତେ ମୋ ଗାଁ ଛାଡ଼ିବାକୁ ପଡ଼ିବ । ଆଗରୁ କେବେ ନୂଆ ଜାଗାକୁ ଯାଇନି । ଏବେ ସବୁ କିଛି ନୂଆ ହେବ । ନୂଆ ସହର, ନୂଆ ପରିବେଶ... ଆଉ ମୋ ବୋଉ ? ମୋ ବୋଉର 'ପୁଅ' ଡାକ ଶୁଣିବାକୁ ମିଳିବନି । ଦିପହରରେ ପେଟଭରି ଶାଗପଖାଳ ଖାଇବାକୁ ମିଳିବନି, କି ବଜାର ଛକ ଆଡ଼େ ଗଲେ, "ଭାଇ ମୋ ପାଇଁ ପେନସିଲ୍‌ଟେ ଆଣିଦେବୁ" ବୋଲି କେହି କହିବେନି । ଆଉ ବାପା, ବାପାଙ୍କର ତାଗିଦ, "କେତେ ଖେଳରେ ମାତିବୁ, କେବେ ତ ବହିଟେ ଧର ! ! !" ଶୁଣିବାକୁ ମିଳିବନି ।

ମନେ ରହିଯିବ ଆମ ଗାଁ ନଈତୁଠ ଯେଉଁଠି ସାଙ୍ଗସାଥୀରେ ଖରାବର୍ଷା ସବୁଦିନ ପାଣିରେ ଡିଆଁଡେଇଁ କରିଛି, ଆମ୍ବତୋଟା ଯେଉଁଠି ପୁରା ଖରାଦିନ ଆମ୍ବକଷି ଝଡ଼େଇ ଝଡ଼େଇ ଯାଇଛି, ଗାଁ






କୋଠଘର, ଯେଉଁଠି ସଂଜ ହୋଇଗଲେ ଝାଞ୍ଜମୃଦଙ୍ଗର ତାଳରେ ଭଜନ ଗାଇଛି ଏ ସବୁ ମୋ ପାଇଁ ସପନ ହୋଇଯିବେ । ଏମିତି କେତେ ଭାବନା ଗୋଟିଏ କ୍ଷଣରେ ମୋ ମନକୁ ଆନ୍ଦୋଳିତ କରୁଥିବା ବେଳେ ଫୋନ ସେପାଖରୁ ଆଲୋକ କହୁଥିଲା, "ଆମେ ଆଉ କେହି ପାଇଲୁନି, ତୁ ପାଇଗଲୁ । ତେଣୁ ରବିବାର ଦିନ ତୋ ତରଫରୁ ଗୋଟେ ବଣଭୋଜି । ସବୁ ଖର୍ଚ୍ଚ ତୋର ।"

ଘରେ ମୋ ରିଜଲ୍ଟ କଥା ଶୁଣିବାପରେ ସତେ ଯେମିତି ଉତ୍ସବ ଆରମ୍ଭ ହୋଇଗଲା । ବାପା ବୋଉ, ସାନ ଭଉଣୀ, ସାହି ପଡ଼ିଶା, ପିଉସା ପିଉସୀ, ମଉସା ମାଉସୀ, ମାମୁଁ ମାଇଁ ଆଉ କେତେ ସମ୍ପର୍କୀୟଙ୍କ ଫୋନ ଆସିବାରେ ଲାଗିଥିଲା । ସେ ଦିନ ଘରେ ବିଶେଷ ଭୋଜିର ଆୟୋଜନ ହୋଇଥିଲା କହିଲେ ଚଳିବ । ସମସ୍ତେ ବହୁତ ଖୁସିରେ ଥିଲା । ବୋଉର ମୁହଁ ଟିକେ ଶୁଖିଲା ଲାଗୁଥିଲା । ହେଲେ ବି ସେ ସମସ୍ତଙ୍କୁ ଭଲ ଖୁଆଇପିଆଇ ପୁଅ ପାଇଁ ଗର୍ବ କରୁଥିବା କଥା କହୁଥିଲା । ଦେଖୁ ଦେଖୁ ଦି'ମାସ କେମିତି ବିତିଗଲା କିଛି ଜଣାପଡ଼ିଲାନି । ସେଦିନ ବି ଆସିଲା, ଯେଉଁଦିନ ମୋତେ ଗାଁ ଛାଡ଼ି ଯିବାକୁ ପଡ଼ିଲା ।

ସାଙ୍ଗସାଥୀମାନେ ମୋ ବ୍ୟାଗ୍ ବସ୍ତାନି ଧରି ଗାଁରୁ ବାହାରି ଅନତି ଦୂରରେ ଥିବା ବସଷ୍ଟାଣ୍ଡ ପର୍ଯ୍ୟନ୍ତ ନେଇଗଲେ, ବାପା, ସାନଭଉଣୀ ଆଉ କେତେଜଣ ପଡ଼ୋଶୀ ବି ଆସିଥିଲେ । ବୋଉ ମୋ ସାଥିରେ ସାଥିରେ ଚାଲିଥିଲା । କହୁଥିଲା, "ଠିକ୍ ସମୟରେ ଖାଇଦେବୁ । ଦେହର ଯତ୍ନ ନେଉଥିବୁ । ମନ କରି ସବୁ ପଢ଼ିବୁ । ଭଲ ଲୋକ ହେଲେ ଗାଁରେ ତୋ ବାପା ଛାତି ଫୁଲେଇ ଚାଲିବେ । ଖାଇବା ବେଳକୁ ଆଉ ବାଛବିଚାର କରିବୁନି । ଯାହା ମିଳିବ ଖାଇବୁ..." ସମସ୍ତେ ଖୁସିରେ ଥିଲେ । ହେଲେ ବୋଉର ଆଖିରେ ଲୁହ ଜକେଇ ଆସୁଥିଲା । ଗାଁ ରାସ୍ତାରେ ଯାଉଥିବା ବେଳେ ପଛକୁ ଫେରି ଚାହୁଁଥିଲି, ଗାଁ ଟା ସତେ ଯେମିତି ମୋ ଠାରୁ ଆପେ ଆପେ ଦୂରେଇ ଯାଉଥିଲା, ଆଉ କହୁଥିଲା, "ଯାଆ, ଆମ ଗାଁ ପାଇଁ ନାଁ କରିବୁ । ହେଲେ ଆମକୁ ଭୁଲି ଯିବୁନି ।"

ବସଷ୍ଟାଣ୍ଡରେ ଅପେକ୍ଷା କରୁଥିବା ବେଳେ ବସ ଆସିଲା । ସାଙ୍ଗମାନେ ବସରେ ମୋ ବ୍ୟାଗବସ୍ତାନି ରଖାଇଦେଲେ । ବସରେ ବସି ଦେଖୁଥିଲି, ଆମ ଗାଁ ପାଖର ସବୁଜ ବିଲକ୍ଷେତ, ଦୂରରେ ଥିବା ବଡ଼ ପୋଖରୀ ଆଉ ଧୂଳିଧୂସରିତ ଗାଁ ରାସ୍ତା ।






ସମସ୍ତେ ଯେମିତି ବ୍ୟାକୂଳ ହୋଇ ମୋତେ ଚାହିଁଥିଲେ । ସାନ ଭଉଣୀ ଖୁସିରେ ଥାଏ ଯେ ତା ଭାଇର ଚାକିରୀ ହୋଇଗଲା, ସେ କହିଥିଲା, "ଭାଇ ତୁ ଆସିଲା ବେଳକୁ ମୋ ପାଇଁ ଭଲ ସ୍କୁଲ୍ ବ୍ୟାଗଟେ ଆଣିଦେବୁ ।" ସାଙ୍ଗମାନେ ସରକାରୀ କ୍ୟାଣ୍ଟିନରୁ ଶସ୍ତାରେ କଣ କଣ ସବୁ ଜିନିଷ ଆଣିବାପାଇଁ କହୁଥିଲେ ମୋତେ କିଛି ଶୁଣାଯାଉ ନଥିଲା । ବାପା କହିଲେ, "ଛଅ ମାସ ଟ୍ରେନିଂ ଅଛି । କଷ୍ଟ ହେବ, କିନ୍ତୁ ଭାଙ୍ଗିପଡ଼ିବୁନି । ସାହାସ ଆଉ ଧୈର୍ଯ୍ୟର ସହ ସବୁ କରିବୁ । ସମୟ ପାଇଲେ ବୋଉକୁ ଫୋନ୍ କରିଦେବୁ । ମୁଁ ଚେଷ୍ଟା କରିବି ଯାଇ ତୋତେ ଟିକେ ଦେଖି ଆସିବି ।" ବାପାଙ୍କ ଆଖି ମଧ୍ୟ ଛଳ ଛଳ ହୋଇ ଉଠୁଥିଲା । ଗାଡ଼ିରେ ବସିବାପରେ ଗାଡ଼ି ଆଗକୁ ଆଗକୁ ଯେତେ ବଢୁଥିଲା ମୋତେ ମୋ ଗାଁଠାରୁ ଦୂରେଇ ନେବା ଭଳି ଭ୍ରମ ହେଉଥିଲା । ଆମ ଗାଁକୁ ମୁଁ କେବେ ବାହାରୁ ଏମିତି ଦେଖିନଥିଲି । କେବେ ବାହାରକୁ ଯିବା କଥା ଚିନ୍ତା କରିନଥିଲି । ଆଜି ଯେତେବେଳେ ମୁଁ ଗାଁରୁ କିଛି ମାସ ବା ବର୍ଷ ପାଇଁ ବାହାରକୁ ଯିବା କଥା ଜାଣିସାରିଥିଲି, ମୋତେ ମୋ ଗାଁ ସ୍ୱର୍ଗଭଳି ଲାଗୁଥିଲା ।

ଧିରେ ଧିରେ ବସ ଆଗକୁ ଆଗକୁ ବଢ଼ିଗଲା ଆଉ ଆମ ଗାଁ କାହିଁ କେଉଁ ଦୂରରେ ସତେ ଯେମିତି ହଜିଗଲା । ଆଖିରୁ ଲୁହ ଝରି ଆସିଥିଲା । ଯେଉଁ ଗାଁରେ ମୋ ଜୀବନର ଏତେ ବର୍ଷ ବିତିଗଲା ତାକୁ ଛାଡ଼ି ଆଗକୁ ଯିବାଟା କେତେ କଷ୍ଟକର ତାହା କେବଳ ମୁଁ ହିଁ ଜାଣିପାରୁଥିଲି । ସେହିଦିନ ମନେ ମନେ ସ୍ଥିର କରିଥିଲି, ଯେତେ ଯାହା ହେଉ ଏଇ ଗାଁକୁ ମୁଁ ଛାଡ଼ିବିନି । ଚାକିରୀରେ ଯେତେବର୍ଷ ବିତିଗଲେ ସୁଦ୍ଧା, ପୁଣିଥରେ ଏଇ ଗାଁକୁ ଆସି ଘରଟିଏ କରି ବାପାବୋଉଙ୍କ ସହ ଶାନ୍ତିରେ ରହିବି ।

ଆଜି ଚାକିରୀ କରିବାର ଅନେକ ବର୍ଷ ହୋଇଗଲା । ଆଜି ବି ଗାଁକୁ ଯାଏ । କାହିଁକି କେଜାଣି ଗାଁ ଟା ସେତେ ଆପଣାର ଆଉ ଲାଗେନା । ସାଙ୍ଗସାଥୀମାନେ ବି ସବୁ ଆଉ ସେତେ ଆତ୍ମୀୟତାର ସହ ମିଶନ୍ତି ନାହିଁ । ଗାଁ ନଈରେ ବୁଡ଼ି ଗାଧୋଇବା ପାଇଁ ସାଙ୍ଗ ମିଳନ୍ତି ନାହିଁ । ସନ୍ଧ୍ୟାରେ କୋଠଘରେ ଝାଞ୍ଜମୃଦଙ୍ଗ ବାଜେ ସତ ହେଲେ ମୁଁ ଖାଲି ଦୂରରେ ରହି ଦେଖେ ଆଉ ଫେରିଆସେ । ବେଳେ ବେଳେ ପୋଖରୀ ହିଡ଼ାରେ ବସି ଚାହିଁ ରହିଥାଏ ସେଇ ସ୍ଥିର ପାଣିକୁ, ଯେଉଁଠି ଦିନେ






ଆମେ ଘଣ୍ଟା ଘଣ୍ଟା ଗାଧୋଉଥିଲୁ । ମନହୁଏ ପ୍ରଶ୍ନ କରିବାକୁ ଆଜି କାହିଁକି ସବୁ ବଦଳି ଯାଇଛି ? ହେଲେ ମନ ଭିତରୁ କେହିଜଣେ ସ୍ମିତହସଟିଏ ଦେଇ କହିବା ପରେ ମନେ ହୁଏ, “ଆମେ ସବୁ ଯେମିତି ଥିଲୁ ସେମିତି ଅଛୁ । ଆଜି ବି ଏଇ ପୋଖରୀରେ ପିଲାମାନେ ଘଣ୍ଟା ଘଣ୍ଟା ଗାଧୋଉଛନ୍ତି । ସ୍କୁଲରୁ ଲୁଚି ଆସି ପିଲାମାନେ ଏଠି ପହଁରା ଶିଖୁଛନ୍ତି । ଗାଁ ଦାଣ୍ଡରେ ଏବେ ବି ପିଲାମାନେ ଦଳଦଳ ହୋଇ କାନ୍ଧରେ ହାତ ଥୋଇ ବୁଲୁଛନ୍ତି । ଗାଁ ନଈତୁଠରେ ଏବେ ବି ପିଲାମାନଙ୍କ କୋଳାହଳ ସେମିତି ଅଛି । ଆମ୍ବତୋଟାରେ ଆମ୍ବକଷି ଏବେ ବି ଝଡ଼େଇ ନେଉଛନ୍ତି । ସବୁ ସେମିତି ଅଛି ହେଲେ ତୁ କିନ୍ତୁ ଆଉ ଗାଁର ହୋଇ ରହିନୁ... ତୁ ଆମକୁ ଭୁଲି ଯାଇଛୁ ।”

ନାବିକ, ଭାରତୀୟ ନୌସେନାବାହିନୀ
ବିଶାଖାପାଟଣା, ଆନ୍ଧ୍ରପ୍ରଦେଶ - ୫୩୦୦୧୪
ଦୂରଭାଷ - ୭୦୩୬୧୮୨୦୯୩




# ବିଚ୍ଛିନ୍ନାଞ୍ଚଳରେ ଜଗନ୍ନାଥ



ଲିଙ୍ଗରାଜ ପଟ୍ଟନାୟକ

ବିଚ୍ଛିନ୍ନାଞ୍ଚଳରେ ଶ୍ରୀ ଜଗନ୍ନାଥ ସଂସ୍କୃତି

ଶ୍ରୀକାକୁଲମ୍ ଜିଲ୍ଲାରେ ଜଗନ୍ନାଥ ତତ୍ତ୍ୱ ଏବଂ ମନ୍ଦିର

ଶ୍ରୀ ଲିଙ୍ଗରାଜ ପ୍ରସାଦ ଅମୂଲ୍ୟ ପଟ୍ଟନାୟକ

ପୂରାତନ ଓଡ଼ିଶାର ଆଦିମ ଅଧିବାସୀ, ଆଦିବାସୀ ବା ଶବର ମାନଙ୍କ ଦେବତାଥିଲେ ଶ୍ରୀ ଜଗନ୍ନାଥ, ଯଦିଓ ସେମାନେ ତାଙ୍କୁ ଏହି ନାମରେ ପୂଜା କରୁନଥିଲେ । ଶବରମାନେ କୀଟୁଙ୍ଗଙ୍କ ଦେବତାଙ୍କୁ ପୂଜା କରୁଥିଲେ ଯାହା ପରେ ଚତୁର୍ଦ୍ଧାମୂର୍ତ୍ତିରେ ପରିବର୍ତ୍ତନ ହୋଇଥାଇପାରେ ବୋଲି ଅନେକେ ବିଶ୍ୱାସ ଏବଂ ଦୃଢ଼ ମତ ପୋଷଣ କରନ୍ତି ।

ଅତୀତରେ ଉତ୍କଳ ପ୍ରଦେଶ ବଣଜଙ୍ଗଲରେ ଭରି ରହିଥିଲା । ଆଲେକ୍‌ଜାଣ୍ଡରଙ୍କ ଭାରତ ଗସ୍ତ ସମୟରେ ତାଙ୍କ ସହିତ ଆସିଥିବା ପରିବ୍ରାଜକ ମେସାସ୍ଥ୍ୟନେସ୍ ନିଜ ଭ୍ରମଣକାଳୀନ ପୁସ୍ତକରେ ଉଲ୍ଲେଖ କରିଛନ୍ତି ଯେ, ସେହି ସମୟରେ କଳିଙ୍ଗର ତିନୋଟି ମୁଖ୍ୟ ଭାଗ ଥିଲା । ଏହାର ମଧ୍ୟଭାଗରେ ଶଉରୀ ବା ଆଧୁନିକ ସମୟର ଶବରମାନେ ବାସ କରୁଥିଲେ ।

ଶବର ମାନଙ୍କ ବିଷୟରେ ଅନେକ ଲୋକକଥା ଶୁଣିବାକୁ ମିଳିଥାଏ । ପୂରାତନ କଳିଙ୍ଗରେ ପୁଲିଣ୍ଡା ନାମକ ଶବର




ଗୋଷ୍ଠୀମାନେ ଜନପଦମାନ ସୃଷ୍ଟି କରି ରହୁଥିଲେ । ଏବଂ ସେମାନେ 'କିଂଟୁ' ନାମକ ଦେବତାର ପୂଜା କରୁଥିଲେ । ଏଥିପାଇଁ ସେମାନେ ଜନପଦଠାରୁ ଅଳ୍ପ ଦୂରରେ କାଷ୍ଠ ଓ ପ୍ରସ୍ତର ନିର୍ମିତ ମୂର୍ତ୍ତିମାନ ସ୍ଥାପନ କରି ପୂଜା କରୁଥିଲେ ।

ଉତ୍ତର ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍ ମଣ୍ଡଳରେ ଏବେ ମଧ୍ୟ ଏହି ପ୍ରକାରର କିଛି ଅନନ୍ୟ ପରମ୍ପରା ଦେଖିବାକୁ ମିଳେ, ଯାହା ଜଗନ୍ନାଥ ସଂସ୍କୃତି ସହ ମେଳଖାଏ । ଶ୍ରୀକାକୁଲମ୍ ଜିଲ୍ଲା କେଭିଟି ବ୍ଲକ୍ ଅନ୍ତର୍ଗତ ଡି ଗୋଣାପୁଟୁଗା ଗାଁରେ ତିନୋଟି ନିମଗଛର ଗଣ୍ଡିକୁ ଏକତ୍ର ପୂଜା କରାଯାଏ । ଯାହା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଆଦିମ ରୂପ ବୋଲି ବିବେଚନା କରାଯାଏ । ପ୍ରତି ପାଞ୍ଚବର୍ଷରେ ସେହି ଦାରୁକୁ ବଦଳାଇ ନୂଆ ନିମଗଛ ଦାରୁ ସ୍ଥାପନା କରାଯାଏ । ଏଥିପାଇଁ ବହୁତ ବଡ଼ ଉତ୍ସବର ଆୟୋଜନ ମଧ୍ୟ କରାଯାଏ ।

ସେହିପରି ଟେକିଲି ବ୍ଲକ୍ ଅନ୍ତର୍ଗତ ଡମରା ଗାଁରେ ମହିଳା ପୂଜାରୀମାନେ ଜଗନ୍ନାଥ ମନ୍ଦିରରେ ପୂଜାର୍ଚ୍ଚନା କରନ୍ତି । କେଭିଟି ଆଉ ସନ୍ଥାବୋମ୍ମାଲି ବ୍ଲକରେ ଅନେକ ଜଗନ୍ନାଥ ମନ୍ଦିରରେ ପୂଜକ ହେଉଛି କୈବର୍ତ୍ତ ଜାତିର ଲୋକ । ଏବଂ ଏହି ସବୁ ଅଞ୍ଚଳରେ ନିମ ଗଛର ଗଣ୍ଡିକୁ ଆଣି ପୂଜା କରାଯିବାର ପରମ୍ପରା ଅନେକ ଶତାବ୍ଦୀରୁ ରହିଛି ।


ଚିତ୍ର ୧୭ : ବାଡ଼ାସାହି ଶ୍ରୀଜଗନ୍ନାଥ

ମହେନ୍ଦ୍ରଗିରି ପାର୍ବତ୍ୟାଞ୍ଚଳ ଶିଖରରେ ବର୍ତ୍ତମାନ ମଧ୍ୟ ଏହି ସବୁ ଦେବତାଙ୍କ ଭଗ୍ନାବଶେଷ ଦେଖିବାକୁ ମିଳେ । ମହେନ୍ଦ୍ରଗିରିରେ ଥିବା କୁନ୍ତୀ ମନ୍ଦିର ନିକଟରେ ପ୍ରସ୍ତର ନିର୍ମିତ ଆଦିବାସୀ ଦେବତାଙ୍କ ମୂର୍ତ୍ତି ଦେଖିବାକୁ ମିଳେ ଯାହା ଜଗନ୍ନାଥଙ୍କ ସହ ସମାନ ଦେଖାଯାଏ । ଏହା ଏକ ବିଶାଳ ପ୍ରସ୍ତରମୂର୍ତ୍ତି ହୋଇଥିବାରୁ




ଏହାକୁ ଘୁଞ୍ଚାଇବା ସହଜ ହୋଇନାହିଁ । ସମ୍ଭବତଃ ଏହି ଭଗ୍ନାବଶେଷକୁ ଅନ୍ୟ ସ୍ଥାନକୁ ନେବାର ପ୍ରୟାସ କରାଯାଇ ପରେ ପରେ ଏଠାରେ କୁନ୍ତୀ, ଭୀମ ମନ୍ଦିର ଆଦି ନିର୍ମାଣ କରାଯାଇଛି । ତଥାପି ଆଦିବାସୀ ପୂଜା କରୁଥିବା ମୂର୍ତ୍ତିମାନଙ୍କର ଅବଶେଷ ସେହି ଅଞ୍ଚଳରେ ଦେଖିବାକୁ ମିଳେ ।

ଅଷ୍ଟମ ଶତାବ୍ଦୀ ବେଳକୁ କଳିଙ୍ଗରେ ପୁଲିଣ୍ଡାସେନ ନାମକ ରାଜାଙ୍କ ରାଜୁତି ଥିଲା ଏବଂ ପରେ ପରେ ତାଙ୍କ ପୁତ୍ର ଶୈଳଭାବଙ୍କ ନାମରେ ଏହା ଶୈଳଭାବ ସାମ୍ରାଜ୍ୟ ଭାବରେ ବି ଜଣାଯାଇଥିଲା । ଏବଂ ଏହି ସମୟରେ ମହେନ୍ଦ୍ରଗିରିର ଶିଖରରେ ସେମାନେ ମନ୍ଦିରମାନ ନିର୍ମାଣ କରାଇଥିଲେ । ମହେନ୍ଦ୍ରଗିରି ପର୍ବତରେ ପାର୍ଶ୍ୱରେ ଏକ ଦୀର୍ଘ ଘାଇସଦୃଶ୍ୟ ଫାଙ୍କ ଦେଖାଯାଏ, ଯାହା ପର୍ବତର ୫୦୦ ଫୁଟ୍ ଉଚ୍ଚରୁ ତଳଯାଏଁ ବ୍ୟାପ୍ତ ଏବଂ ଏହାକୁ ଲୋକମାନେ ଦାରୁବ୍ରହ୍ମ ଫାଟ ବୋଲି ମଧ୍ୟ କୁହନ୍ତି । ସମ୍ଭବତଃ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ଏହି ରାସ୍ତାଦେଇ ନିଆଯିବାପରେ ବରୁଆ ବନ୍ଦରରୁ ବଡ଼ ବଡ଼ ପୋତ ବା ଜାହାଜ ମାନଙ୍କ ଦ୍ୱାରା ସ୍ଥାନାନ୍ତରିତ କରାଯାଇଥିବ ।

ମଞ୍ଜୁଷା ଅଞ୍ଚଳରେ ଏକ ବହୁ ପୂରାତନ ମନ୍ଦିର ଦେଖିବାକୁ ମିଳେ ଯାହା ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀରେ ନିର୍ମିତ ହୋଇଥିଲା । ରେଖା ଆକୃତିର ଏହି ମନ୍ଦିରରେ ବର୍ତ୍ତମାନ ସୁଦ୍ଧା ଶିଳାଲେଖ ରହିଛି । ଗଙ୍ଗବଂଶୀୟ ଭାନୁଦେବଙ୍କ ଦ୍ୱାରା ଏହା ନିର୍ମିତ ହୋଇଥାଇ ପାରେ । ଏଥିରେ ମନ୍ଦିରର ଦାୟିତ୍ୱ ବ୍ରାହ୍ମଣ ଏବଂ ବୈଷ୍ଣବ ମାନଙ୍କୁ ଦିଆଗଲା ବୋଲି ଉଲ୍ଲେଖ ରହିଛି । ଏହି ମନ୍ଦିରରେ ଜଗନ୍ନାଥ, ମା ଦୁର୍ଗା ଏବଂ ଶିବଙ୍କ ମନ୍ଦିର ମଧ୍ୟ ରହିଛି । ତେଣୁ



ବହୁ ପୁରାତନକାଳରୁ ଏହି ଅଞ୍ଚଳରେ ଜଗନ୍ନାଥଙ୍କ ପୂଜାର୍ଚ୍ଚନା ହେଉଥିବା କଥା ଜଣାପଡ଼େ ।

ମହେନ୍ଦ୍ରଗିରି ପର୍ବତର ପାଦଦେଶର ପୂର୍ବଭାଗରେ ଏକ ବାତ୍ରାସାହି ନାମକ ଆଦିବାସୀ ଗ୍ରାମ ଅଛି । ଏହିଠାରେ ଶବରମାନେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଏବଂ ସୁଦର୍ଶନଙ୍କୁ ପୂଜାର୍ଚ୍ଚନା କରନ୍ତି । କଳିଙ୍ଗର ମଥରା ସାମ୍ରାଜ୍ୟରେ ଏହି ଅଂଚଳକୁ ମହେନ୍ଦ୍ରଭୋଗ ବୋଲି କୁହାଯାଉଥିଲା । ଏହି ସାମ୍ରାଜ୍ୟର ଜନୈକ ରାଜା ଉମାବର୍ମନ୍ କୋ଩ୁରା ନାମକ ଏକ ଗ୍ରାମକୁ ଜଣେ ବ୍ରାହ୍ମଣଙ୍କୁ ଦାନ କରିଥିବା ଇତିହାସ ତାମ୍ରପତ୍ରରେ ଲିଖିତ ଆକାରରେ ଅଛି । ସେହିପରି ଆଉ ଏକ ଗ୍ରାମ ବିଷ୍ଣୁ ଶର୍ମାନାମକ ଜଣେ ବ୍ରାହ୍ମଣଙ୍କୁ ଦାନ କରାଯାଇଛି । ଇତିହାସରେ ଗବେଷଣା କରୁଥିବା ଡା ଶରତ କୁମାର ବେହେରାଙ୍କ ମତରେ ଏହି ବ୍ରାହ୍ମଣ ହିଁ ପଞ୍ଚତନ୍ତ୍ରର ରଚୟିତା ବିଷ୍ଣୁଶର୍ମା ଅଟନ୍ତି । ମଥରା ରାଜବଂଶପରେ ମଞ୍ଜୁଷା ଏବଂ ଏହି ସଂଲଗ୍ନ ଅଞ୍ଚଳ କୋଡ଼ମ୍ବ ରାଜବଂଶ ସାମନ୍ତ ରାଜାଙ୍କ ଅଧୀନରେ ଥିଲେ । ଏହି ବଂଶର ରାଜାମାନେ ମହେନ୍ଦ୍ର ଅଧିପତି ଭାବରେ ନିଜକୁ ସ୍ଥାପିତ କରାଇଥିଲେ । ଏହି ବଂଶଜ ରାଜା ଧର୍ମ ଖେଡ଼ି ଏକ ବ୍ରାହ୍ମଣ ଶାସନର ସ୍ଥାପନା କରାଇ ୩୦୦ ବ୍ରାହ୍ମଣ ପରିବାରଙ୍କୁ ଅଣାଇଥିଲେ । ଏହି ବ୍ରାହ୍ମଣମାନେ ଶାଳିବଣ ଦନ୍ତପୁରା ଅଞ୍ଚଳରୁ ଆସି ଧର୍ମପୁରା ଶାସନରେ ରହିଥିବା କଥା ତାମ୍ର ପତ୍ରରେ ଲିଖିତ ଅଛି । ମହେନ୍ଦ୍ରଗିରି ଚତୁର୍ପାର୍ଶ୍ୱରେ ଥିବା ଅନେକ ଅଞ୍ଚଳରେ ବ୍ରାହ୍ମଣ ଶାସନର ବହୁଳତା ଏହାକୁ ସିଦ୍ଧ କରିଥାଏ ଯେ ତତ୍କାଳୀନ ରାଜାମାନେ ଏହି ସବୁ ଶାସନ ସ୍ଥାପନ କରିଥିଲେ । ପୁରାତନ ଐତିହାସିକ ତଥ୍ୟକୁ ଗବେଷଣା କଲେ ଜଣାଯାଏ ଯେ ଚତୁର୍ଥରୁ ଦଶମ








ଶତାବ୍ଦୀ ପର୍ଯ୍ୟନ୍ତ ଏହି ଅଞ୍ଚଳରେ ବ୍ରାହ୍ମଣମାନେ ଆଦିବାସୀମାନଙ୍କ ସହ ମିଳିମିଶି ରହୁଥିଲେ । ଆଦିବାସୀ ମାନଙ୍କ ଆଦି ଦେବତା କିଟୁଙ୍ଗଙ୍କୁ ବ୍ରାହ୍ମଣମାନେ ବିଷ୍ଣୁ ଓ ଶିବଙ୍କ ଅବତାର ଭାବରେ ପୂଜା କରିବାକୁ ଲାଗିଲେ ।

ମହେନ୍ଦ୍ରଗିରିର ଦକ୍ଷିଣାଞ୍ଚଳକୁ ଗଙ୍ଗବଂଶର ରାଜା ମାନେ ଶାସନ କରୁଥିଲେ ଏବଂ ତତ୍କାଳୀନ କଳିଙ୍ଗର ରାଜଧାନୀ (କଳିଙ୍ଗନଗର) ବଂଶଧାରା ନଦୀ କୂଳରେ ଥିବା ବର୍ତ୍ତମାନର ମୁଖଲିଙ୍ଗମ୍ ବୋଲି ଜଣାଯାଇଛି । କିନ୍ତୁ ମହେନ୍ଦ୍ରଗିରିର ଉତ୍ତରାଞ୍ଚଳକୁ ଶ୍ୱେତକ ରାଜବଂଶର ଭୌମକାର ମାନେ ଶାସନ କରୁଥିଲେ ବୋଲି ଜଣାଯାଏ ।

ଐତିହାସିକ ଗବେଷଣାକାରଙ୍କ ମତରେ ଶ୍ୱେତକ ପରେ ଚେତକ ଏବଂ ବର୍ତ୍ତମାନ ଚିକିଟି ଭାବରେ ଜଣାଯାଏ । ମହେନ୍ଦ୍ରଗିରିର ପୂର୍ବାଞ୍ଚଳରେ ଚିକିଟି ଏକ ଜମିନଦାର ଅଞ୍ଚଳ ଥିଲା । ମଞ୍ଜୁଷା, ବୁଡ଼ାରସିଂ, ଜଳନ୍ତ୍ରାକୋଟା ଆଦି ଅଞ୍ଚଳ ଶ୍ୱେତକ ସାମ୍ରାଜ୍ୟର ଅଂଶ ଥିଲା ।

ଏକ ତାମ୍ରପତ୍ର ଲିଖନରେ ଉଲ୍ଲେଖ ଅଛି ଯେ ଶ୍ୱେତକ ବଂଶଜ ସ୍ୱୟଂକେଶର ଲୋକ ମାଧବ ବିଷ୍ଣୁଙ୍କୁ ପୂଜନ କରୁଥିଲେ । ଏବଂ ଏହାର ଦାୟିତ୍ୱ ପାଇଁ ଭୋଟିସିଂଗା ଏବଂ ପୋତୁଙ୍ଗ୍ ନାମକ ଦୁଇଟି ଗ୍ରାମ ପ୍ରଦାନ କରାଯାଇଥିଲା । ୯୦୦ ଅବ୍ଦ ୯୨୧ ଖ୍ରୀଷ୍ଟାବ୍ଦରେ ଉଦ୍ଧାର ହୋଇଥିବା ଦୁଇଟି ତାମ୍ର ପତ୍ରରେ ଉଲ୍ଲେଖ ଅଛି ଯେ ଚିକିଟିକୁ ମହାରାଜ ଇନ୍ଦ୍ରବର୍ମନଙ୍କ ଭାଇ ମହାରାଜ ସୁମନ୍ତ ବର୍ମା ଶାସନ କରୁଥିଲେ । ତାଙ୍କୁ ପରମ ମହେଶ୍ୱର ଉପାଧି ମିଳିଥିଲା ଏବଂ ସେ ଶିବଙ୍କ ଭକ୍ତଥିଲେ, କିନ୍ତୁ ତାଙ୍କ ମାଆ ବିଷ୍ଣୁଙ୍କ ଉପାସିକା ଥିବା ହେତୁ ତାଙ୍କୁ ଗୋସ୍ୱାମୀକା ଉପାଧି ମିଳିଥିଲା । ମାଆ






ଏବଂ ବଡ଼ଭାଇଙ୍କ ପତ୍ନୀ ଶ୍ରୀ ୟେଲାଙ୍କାଙ୍କ ଅନୁରୋଧରେ ସେ ଗୋଟିଏ ମନ୍ଦିର ନିର୍ମାଣ କରାଇ ଉଭୟ ବିଷ୍ଣୁ ଏବଂ ଶିବଙ୍କୁ ସ୍ଥାପନା କରିଥିଲେ ଏବଂ ପୂଜା କରୁଥିଲେ । ଏଥିପାଇଁ ଦୁଇଟି ବ୍ରାହ୍ମଣ ଶାସନ ନିର୍ମାଣ କରାଯାଇଥିଲା । ପ୍ରତିଦିନ ପୂଜାପରେ ଏଗାର ଜଣ ବ୍ରାହ୍ମଣଙ୍କୁ ଦାନଧର୍ମ କରାଯାଉଥିଲା, ସେମାନଙ୍କ ମଧ୍ୟରେ ସୋମପ୍ପା ଏବଂ ସରୈପ୍ପା ଅନ୍ତର୍ଭୁକ୍ତ ବୋଲି ତାମ୍ର ପତ୍ରରେ ଲେଖା ଅଛି ।

ମହେନ୍ଦ୍ରଗିରିର ଉଦ୍ୟାନାଞ୍ଚଳରେ ଜନୈକ ବୌଦ୍ଧ ସନ୍ୟାସୀ ଶବରପ୍ପା ବା ଶବରିପ୍ପା ରହୁଥିବା କଥା ଶୁଣାଯାଏ, ଯେ ତନ୍ତ୍ରଜ୍ଞାନ ଦେଉଥିଲେ । ଲାମା ତାରାନାଥଙ୍କ ଐତିହାସିକ ବିବରଣୀରୁ ଜଣାଯାଏ ଯେ ଏହି ତନ୍ତ୍ରଜ୍ଞାନ ଦ୍ୱାରା ସେହି ସମୟରେ ସେମାନେ ଅନେକ ଅଲୌକିକ ଘଟଣାକୁ ରୂପ ଦେଇପାରୁଥିଲେ । ସେଇଥିପାଇଁ ଏହିମାନଙ୍କୁ ରାଜବଂଶଜମାନେ ବିଶେଷ ସମ୍ମାନ ଦେଉଥିଲେ । ସବରିପ୍ପା ଶ୍ୱେତକ ବଂଶୀୟ ମହାରାଜ ଇନ୍ଦ୍ରବର୍ମନଙ୍କ ରାଜତ୍ୱ ସମୟରେ ରହୁଥିଲେ ଏବଂ ସେ ମନ୍ଦିରରେ ଶିବ, ବିଷ୍ଣୁ ସମେତ ଶକ୍ତି ପୂଜା ବି କରୁଥିଲେ ।

ଅତୀତର କଳିଙ୍ଗର ମଧ୍ୟଭାଗ ବର୍ତ୍ତମାନର ଗଞ୍ଜାମ ଜିଲ୍ଲାଠାରୁ ଉତ୍ତର ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ୍ ଜିଲ୍ଲା ପର୍ଯ୍ୟନ୍ତ ବ୍ୟାପ୍ତ ଥିଲା । ଏହି ଅଞ୍ଚଳରେ ତିନୋଟି ମୁଖ୍ୟ ବନ୍ଦର ଯଥା କଳିଙ୍ଗପଟନମ୍, ବରୁଣ ବା ବରୁଆ ଏବଂ ଇଚ୍ଛାପୁରମ୍ ଆସୁଥିଲା । ଏହି ଅଞ୍ଚଳକୁ ଅତୀତରେ ଦନ୍ତପୁରା ବୋଲି କୁହାଯାଉଥିଲା । ମହାରାଜ ଇନ୍ଦ୍ର ବର୍ମା ଏହି ଅଞ୍ଚଳରେ ନିଜ ରାଜଧାନୀ ମୁଖଲିଙ୍ଗମରେ ସ୍ଥାପନ କରିଥିଲେ ।




ଏହି ଅଞ୍ଚଳରେ ବର୍ତ୍ତମାନ ସୁଦ୍ଧା ଅନେକ ମନ୍ଦିରରେ କୈବର୍ତ୍ତ ଶ୍ରେଣୀର ଲୋକମାନେ ପୂଜକ ଭାବରେ କାର୍ଯ୍ୟନିର୍ବାହ କରିଆସୁଛନ୍ତି, ଯାହା




ଶବର ସଂସ୍କୃତିର ପ୍ରମାଣ ବୋଲି ଅନେକେ ଦାବୀ କରନ୍ତି । ଡ: ଏସ୍ ଏନ୍ ରାଜଗୁରୁ ନିଜ ଓଡ଼ିଆ ଇତିହାସରେ ଉଲ୍ଲେଖ କରିଛନ୍ତି ଯେ ଗୋପାଳପୁରଠାରୁ ଦକ୍ଷିଣରେ ୭୦ କିମି ଦୀର୍ଘ ଅଞ୍ଚଳକୁ ଉଦ୍ୟାନମ୍ ବୋଲି କୁହାଯାଏ । ଏହି ଅଞ୍ଚଳରେ ତାଳ, ନଡ଼ିଆ, କାଜୁ, ଆମ୍ବ ଆଦିର ବିସ୍ତୃତ ବଗିଚା ମାନ ଦେଖିବାକୁ ମିଳେ । ଅତୀତରେ ଏହି ଅଞ୍ଚଳ ଉଡ୍ଡୀୟନ୍ ଭାବରେ ପରିଚିତ ଥିଲା । ଏହି ଅଞ୍ଚଳର କୈବର୍ତ୍ତମାନଙ୍କୁ କଣ୍ଡରା ବା ନୋଳିଆ ବୋଲି କୁହାଯାଏ । ସେମାନେ ତୁଳସୀମାଳି ପିନ୍ଧନ୍ତି ଏବଂ ପୂଜାର୍ଚ୍ଚନା କରନ୍ତି । କିଛି ଲୋକକଥାରେ ଉଲ୍ଲେଖ ଅଛି ଯେ ଏହି ଅଞ୍ଚଳକୁ ନୋଳିଆ ମାନଙ୍କ ସର୍ଦ୍ଦାର ମାନେ ମଧ୍ୟ ଶାସନ କରୁଥିଲେ । ପ୍ରସିଦ୍ଧ କବି ଇନ୍ଦ୍ରଭୂତି ଓ ଲକ୍ଷ୍ମୀଶଙ୍କର ଏହି ଜାତିରେ ଜନ୍ମ ହୋଇଥିଲେ । ଇନ୍ଦ୍ରଭୂତିଙ୍କ ଦ୍ୱାରା ଲିଖିତ 'ଜ୍ଞାନସିଦ୍ଧି' ପୁସ୍ତକରେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ କଥା ପ୍ରଥମେ ଲେଖାଯାଇଛି ।

ଏହି ଅଞ୍ଚଳର କୈବର୍ତ୍ତମାନେ ବିବାହପାଇଁ ଖିଜିଲି ମଣ୍ଡଳ (ଗଞ୍ଜାମର ଘୁମୁସର), ଭଞ୍ଜ ରାଜାଙ୍କ ଅଞ୍ଚଳ ସହ ଯୋଗାଯୋଗ ଥିଲା ବୋଲି ତାମ୍ରପତ୍ରରେ ଲିଖିତ ଅଛି ।

କଳିଙ୍ଗର ତତ୍କାଳୀନ ଭୌମକାର ବଂଶଜ ରାଜାମାନେ ବୌଦ୍ଧଧର୍ମରୁ ଶୈବ ଏବଂ ପରେ ବୈଷ୍ଣବ ମତବାଦକୁ ସ୍ୱୀକାର କରିଛନ୍ତି । ନବମ ଶତାବ୍ଦୀ ବେଳକୁ ଶ୍ୱେତକ ରାଜବଂଶ ଏବଂ ଭଞ୍ଜବଂଶ ଉପରେ ମଧ୍ୟ ଶବର ମାନଙ୍କ ପ୍ରଭାବ ପଡ଼ିଥିଲା ବୋଲି କୁହାଯାଏ । ଏହି ବଂଶଜ ମହାରାଣୀ ପୃଥିବୀ ମହାଦେବୀଙ୍କୁ ପ୍ରଥମେ ମହାବୈଷ୍ଣବୀ ଉପାଧି ମିଳିଥିଲା । ସମ୍ଭବତଃ ଶ୍ୱେତକ ରାଜବଂହୀ ଏବଂ ଗଙ୍ଗ ସମ୍ରାଜ୍ୟର






ମହାରାଜା ଇନ୍ଦ୍ରବର୍ମା ଶବର ମାନଙ୍କ ଦ୍ୱାରା ପୂଜାଯାଉଥିବା ଶ୍ରୀ ଲୋକମାଧବ () କାଷ୍ଠ ନିର୍ମିତ ଦାରୁବ୍ରହ୍ମ)ଙ୍କୁ ଉଦ୍ଧାର କରାଯାଇ ମନ୍ଦିର ନିର୍ମାଣ କରାଯାଇ ଥାଇପାରେ ।

ଏହାପରେ ଉତ୍କଳରେ ଅଶାନ୍ତି ବ୍ୟାପୀବାରେ ଲାଗିଲା ଏବଂ ସୋମବଂଶୀ ରାଜା ଯଯାତିକେଶରୀ କଳିଙ୍ଗାଧିପତି ହେବାପରେ ସେ ଲିଙ୍ଗରାଜ ମନ୍ଦିର ନିର୍ମାଣ କରାଇଥିଲେ । ପରେ ସମ୍ରାଟ ଚୋଡ଼ଗଙ୍ଗଦେବ ମହେନ୍ଦ୍ରଗିରି ପର୍ବତାଞ୍ଚଳରୁ ଶ୍ରୀଲୋକମାଧବଙ୍କ ଦାରୁକୁ ଆଣି ମନ୍ଦିର ନିର୍ମାଣ କରିଥାଇପାରନ୍ତି ।

ମହେନ୍ଦ୍ରଗିରି ପାର୍ବତ୍ୟାଞ୍ଚଳର ପାଦଦେଶରେ ରହୁଥିବା ଜାରା ଶବର ଏବଂ ସୁଦ୍ଧ ଶବର ଶ୍ରେଣୀର ଲୋକମାନେ ଜଗନ୍ନାଥ ଅଣସର ଘରେ ରହୁଥିବା ସମୟରେ ସମସ୍ତ ପ୍ରକାର ସେବାକାର୍ଯ୍ୟ କରିଥାନ୍ତି । ଏହି ଶବର ମାନେ ଆଷାଢ଼ମାସରେ ନିଜର ଦେବତା କିଟୁଙ୍ଗଙ୍କୁ ପୂଜ କରିଥାନ୍ତି । ସେମାନଙ୍କ ମନ୍ଦିରରେ ଦୁଇଟି ଦେବଙ୍କ ମଧ୍ୟରେ ଜଣେ ଦେବୀ ରହୁଥିବାରୁ ତାହା ବର୍ତ୍ତମାନର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ପ୍ରତିମୂର୍ତ୍ତୀର ପୂରାତନ ରୂପ ହୋଇଥାଇପାରେ ।

ଶ୍ରୀକାକୁଲମ୍ ଜିଲ୍ଲା ଅତୀତର କଳିଙ୍ଗ ସମ୍ରାଜ୍ୟର ଅଂଶ ଥିଲା । ବିଶ୍ୱାସ କରାଯାଏ ଯେ ଜଗନ୍ନାଥଙ୍କ ଜନ୍ମ ଏହି ଅଞ୍ଚଳରୁ ହିଁ ହୋଇଥିଲା । ଏହି ଅଞ୍ଚଳର ଶବରରାଜା ମାନେ ବିଷ୍ଣୁଙ୍କ ଏକ ପ୍ରତିମାକୁ ପୂଜା କରୁଥିଲେ, ଯାହା ପରେ ପରେ ଉତ୍କଳୀୟ ସମ୍ରାଟ ମାନଙ୍କ ଦ୍ୱାରା ସ୍ଥାନାନ୍ତରିତ କରାଯାଇ ଚତୁର୍ଦ୍ଧାମୂର୍ତ୍ତୀ ଭାବରେ ପୂଜା ପାଉଛନ୍ତି । ବିଶାଳ ଜନତାଙ୍କ ମନକୁ ରଖିବାକୁ ବୈଷ୍ଣବ, ଶାକ୍ତ, ଶୈବ ଆଦି ପୂଜାକୁ ଏକତ୍ରିତ କରିବାପାଇଁ ଏହା ଅବତାରଣା କରାଯାଇ ଥାଇପାରେ ବୋଲି ମତ






ଦିଅନ୍ତି ବିଶିଷ୍ଟ ଗବେଷକ ଡ: ଏସ୍ ଏନ୍ ରାଜଗୁରୁ, ଡ: ବେଣିମାଧବ ପାଢ଼ୀ ଓ ଡ: ଭରତ ପଣ୍ଡା । ଜଗନ୍ନାଥ ତତ୍ତ୍ୱ ସମ୍ପୂର୍ଣ୍ଣତଃ ଶବର ବା ଆଦିବାସୀମାନଙ୍କ ଠାରୁ ଆସିଛି, ପରେ ପରେ ଏଥିରେ ବୈଦିକ ପୂଜାପରମ୍ପରାକୁ ଯୋଡ଼ିଦେଇ ସର୍ବଜନ ସମ୍ପ୍ରଦାୟକୁ ଖୁସି କରିବାପାଇଁ ଏପରି କରାଯାଇଛି ।

ମହାରାଜ ଚୋଡ଼ଗଙ୍ଗଦେବ ମୁଖଲିଙ୍ଗମ ଅଞ୍ଚଳରୁ ନିଜ ରାଜଧାନୀ ବାରଣାସୀ କଟକକୁ ସ୍ଥାନାନ୍ତରିତ କରିବା ପରେ ପୁରୀ ଶ୍ରୀମନ୍ଦିରର ନିର୍ମାଣ କରାଇଛନ୍ତି । ତତ୍କାଳୀନ ଅଶାନ୍ତ କଳିଙ୍ଗ ସମ୍ରାଜ୍ୟର ସମସ୍ତ ଶ୍ରେଣୀର ଲୋକଙ୍କୁ ଏକତ୍ରିତ କରିବାପାଇଁ ଶ୍ରୀମନ୍ଦିର ପରି ବିଶାଳ ପ୍ରକଳ୍ପ ତାଙ୍କୁ ସାହାଯ୍ୟ କରିଥିବ । ଅନେକ ସ୍ଥାନରେ ମନ୍ଦିରମାନଙ୍କରେ କେବଳ ଜଗନ୍ନାଥଙ୍କୁ ହିଁ ପୂଜା କରାଯିବାର ଦେଖାଯାଏ । ଏଥିରୁ ସ୍ପଷ୍ଟ ହେଉଛି ଯେ ଅତୀତରେ କେବଳ ଜଗନ୍ନାଥଙ୍କୁ ହିଁ ବିଷ୍ଣୁଙ୍କ ଆଦିରୂପ ଭାବରେ ପୂଜା କରାଯାଇଥିଲା, ପରେ ବଳଭଦ୍ର ଓ ସୁଭଦ୍ରାଙ୍କୁ ସଂଲଗ୍ନ କରାଯାଇଛି ।

ଶ୍ରୀକାକୁଲମ୍ ଜିଲ୍ଲାରେ ପଚାଶରୁ ଅଧିକ ଜଗନ୍ନାଥ ମନ୍ଦିରର ସମାଗମ ବାସ୍ତବିକ ଆଶ୍ଚର୍ଯ୍ୟର ବିଷୟ । ଏହି ସବୁ ମନ୍ଦିରରେ ପ୍ରାଚୀନ ଉତ୍କଳୀୟ ଚାରୁକାରୁକଳାର ଉଦ୍ଭବ ଦେଖିବାକୁ ମିଳେ । ଯାହା ଅବିସ୍ମରଣୀୟ । ପୋଟାଙ୍ଗୀ, ଟର୍ଲାକୋଟା, ସୂର୍ଯ୍ୟନାରାୟଣସ୍ୱାମୀ ମନ୍ଦିର, ଶ୍ରୀକୂର୍ମମ ଏବଂ ମେଲିଆପୁଟୀ ମନ୍ଦିର ଆଦି ପ୍ରାଚୀନ ଉତ୍କଳୀୟ ମନ୍ଦିର ନିର୍ମାଣ ଶୈଳୀର ବିଶେଷ ନିଦର୍ଶନ ।



ଅତୀତରେ ଯେତେବେଳେ ବି କଳିଙ୍ଗ ଉପରେ ବିପଦର ଛାଇ ପଡ଼ିଛି ସେତେବେଳେ ଜଗନ୍ନାଥଙ୍କୁ ନିରାପଦରେ ରଖାଇବା ପାଇଁ ରାଜାମାନେ ତତ୍ପର






ହୋଇଛନ୍ତି । ଉଲ୍ଲେଖଯୋଗ୍ୟ ଯେ ଶ୍ରୀମନ୍ଦିର ଉପରେ ଆକ୍ରମଣ ଯେତେଥର ବି ହୋଇଛି ସବୁଥର ଆକ୍ରମଣକାରୀମାନେ ଉତ୍ତର ଦିଗରୁ ହିଁ ଆସିଛନ୍ତି, ତେଣୁ ସେହି ସମୟରେ ଜଗନ୍ନାଥଙ୍କୁ ପାତାଳୀ କରାଯାଇଥିବା କଥା ଇତିହାସ କହେ, ଏବଂ ଏହା ଦକ୍ଷିଣ ଦିଗରେ ହିଁ ସମ୍ଭବ ହୋଇପାରେ । ଡ: ଗୌରୀଶଙ୍କର ମିଶ୍ରଙ୍କ ଅନୁଯାୟୀ ଜଗନ୍ନାଥଙ୍କ ପାତାଳୀ କେବଳ ଦକ୍ଷିଣରେ ହିଁ ହୋଇଥିଲା । ଗଞ୍ଜାମ ଜିଲ୍ଲା ଏବଂ ଶ୍ରୀକାକୁଲମ୍ ଜିଲ୍ଲା ଏଥିରେ ପ୍ରମୁଖ ଭୂମିକା ନେଇଥିଲେ । ସୂଚନାଯୋଗ୍ୟ ଯେ ଜଗନ୍ନାଥଙ୍କୁ ଚିଲିକାରେ ବ୍ରହ୍ମଗିରିଠାରୁ ଦକ୍ଷିଣ ଉପକୂଳଦେଇ ଗୋପାଳପୂର, ସୋନପୂର ଦେଇ ବରୁଆ ପର୍ଯ୍ୟନ୍ତ ଅଣାଯାଇଥିବ ଏବଂ ତାଙ୍କୁ ଏହି ଘଞ୍ଚ ଅରଣ୍ୟଆଚ୍ଛାଦିତ ତଥା ବୀର ଶବର ଜାତିର ଲଢୁଆମାନଙ୍କ ଦାୟିତ୍ୱରେ ସୁରକ୍ଷିତ କରାଯାଇଥିବ । ଇତିହାସ କହେ ଯେ କଳାପାହାଡ଼ ଆକ୍ରମଣ ସମୟରେ ତତ୍କାଳୀନ ଟେକିଲିର ରାଜା ଜଗନ୍ନାଥଙ୍କ ପାତାଳୀରେ ସାହାଯ୍ୟ କରିଥିଲେ ।

ଗଞ୍ଜାମର (ଶ୍ରୀକାକୁଲମ୍ ଜିଲ୍ଲା ଅତୀତରେ ଗଞ୍ଜାମ ଜିଲ୍ଲା ଅନ୍ତର୍ଭୂକ୍ତ ଥିଲା) ଲୋକମାନେ ସାଧାରଣତଃ ଧାର୍ମିକ, ଦେଶସେବୀ ଏବଂ ଲଢୁଆ ସ୍ୱଭାବର ହୋଇଥିବା ହେତୁ ସେମାନେ ମହାପ୍ରଭୂଙ୍କ ସୁରକ୍ଷାପାଇଁ ସମସ୍ତ ପଦକ୍ଷେପ ନେଇଥିଲେ ।

ବର୍ତ୍ତମାନ ଅଣବିଭାଜିତ ଗଞ୍ଜାମ ଜିଲ୍ଲାର ଶବର / ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଯଥା, ଜିରାଙ୍ଗ, ସେରଙ୍ଗ, ନାରାୟଣପୁର, ଗୁମ୍ମା, ରାମଗିରି, ଲହୁଣୀଆଗଡ଼ ଅଞ୍ଚଳରେ ଅନେକ ଜଗନ୍ନାଥ ମନ୍ଦିର ଦେଖିବାକୁ ମିଳେ । ଏହା ସମେତ ଶ୍ରୀକାକୁଲମ୍ ଅଞ୍ଚଳରେ ମଧ୍ୟ ଅନେକ ଜଗନ୍ନାଥ ମନ୍ଦିର ଦେଖିବାକୁ ମିଳେ, କିନ୍ତୁ ଏହି ଅଞ୍ଚଳର ବିଶେଷତ୍ୱ ହେଉଛି ଏଠାରେ ଥିବା ମନ୍ଦିର ମାନଙ୍କରେ କେବଳ ଜଗନ୍ନାଥଙ୍କୁ (ଦଧିବାମନ) ହିଁ ପୂଜା କରାଯାଏ ।






୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସ୍ଥାପନ ହେଉଥିବା ବେଳେ ଶ୍ରୀକାକୁଲମ୍ ଜିଲ୍ଲାକୁ ଓଡ଼ିଶାରୁ ବାହାର କରି ଦିଆଗଲା । ଏହା କେବଳ ଭାଷାଭିତ୍ତିରେ ହୋଇଥିବା ଯୋଗୁଁ ହିଁ ହେଲା, ନଚେତ ଏହି ଜିଲ୍ଲାରେ ଜଗନ୍ନାଥ ସଂସ୍କୃତିର ପ୍ରସାର ଦେଖିଲେ ଏହା ଓଡ଼ିଶାର ଅଂଶ ହୋଇ ରହିଥିବା ଉଚିତ ଥିଲା । ଏହି ଆଲେଖ୍ୟର ଗବେଷକ ହିସାବରେ ମୁଁ ଏହି ଅଞ୍ଚଳରେ ବିଶେଷ ଭାବରେ ଭ୍ରମଣ କରି ଜାଣିବାକୁ ପାଇଛି ଯେ ଓଡ଼ିଶା ବାହାରେ ଯଦି କୌଣସି ଅଞ୍ଚଳରେ ସର୍ବାଧିକ ଜଗନ୍ନାଥ ମନ୍ଦିର ଅଛି ତା ହେଲେ ତାହା କେବଳ ଶ୍ରୀକାକୁଲମ୍ ଜିଲ୍ଲାରେ ହିଁ ଅଛି ।

ଜଗନ୍ନାଥ ହେଉଛନ୍ତି ବିଶ୍ୱ ବ୍ରହ୍ମାଣ୍ଡର ନାଥ । ତାଙ୍କୁ ଯିଏ ଯେମିତି ପାଇଲା ସେମିତି ପୂଜା କରିଛି । ପ୍ରତ୍ୟେକ ମନ୍ଦିରରେ ଶ୍ରଦ୍ଧା ଓ ଭକ୍ତିର ସହକାରେ ପୂଜା ହେଉଛି । ଯେଉଁ ସବୁ ମନ୍ଦିରକୁ ତେଲୁଗୁ ସମ୍ପ୍ରଦାୟର ଲୋକମାନେ ପରିଚାଳନା କରୁଛନ୍ତି ସେଠାରେ ପୂଜା ଅର୍ଚ୍ଚନା ଭଲରେ ହେଉଛି, ମନ୍ଦିରର ସ୍ଥିତି ଅକ୍ଷୁର୍ଣ୍ଣ ରହିଛି ଏବଂ ରଥଯାତ୍ରା ଆଦି ପାର୍ବ ଅତି ନିଷ୍ଠାର ସହ ପାଳନ ହେଉଛି । କେଉଁଠି ଆଦିବାସୀ, କେଉଁଠି କଣ୍ଡରା, କେଉଟ, ପୁରୋହିତ ତ କେଉଁଠି ଶ୍ରୀବୈଷ୍ଣବ, ତେଲୁଗୁ ବ୍ରାହ୍ମଣ, ଜାଣି ବା ଓଡ଼ିଆ ପୁରୋହିତ ବାଛବିଚାର ନାହିଁ । ଏଠି ଦଲାଚକଟା ନାହିଁ କି ଦାନଧର୍ମରେ ବାଛବିଚାର ନାହିଁ । ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରରେ ହେଉଥିବା ଦୁର୍ନୀତି ଏଠି କିନ୍ତୁ ନାହିଁ ।

ଲଳିତା ବିଦ୍ୟାପତିଙ୍କ ପ୍ରେମରେ ପଡ଼ି ନିଜ କୂଳଦେବତାଙ୍କ ସହ ପ୍ରତାରଣା କରିଥିଲା, ତେଣୁ ନୀଳମାଧବଙ୍କୁ ସୁଦୂର ପୁରୀରେ ନେଇ ମନ୍ଦିରରେ ବସାଇ ଦିଆଗଲା । ମହେନ୍ଦ୍ରଗିରି ଭୋଗରେ ଥିବା ନିଷ୍କପଟ ସରଳ ଆଦିବାସୀ ଓ ଅଧିବାସୀଙ୍କ ଦେବତା ହିଁ ଜଗନ୍ନାଥ । ସତ୍ୟନାରାୟଣ ରାଜଗୁରୁଙ୍କ ପରି ବରିଷ୍ଠ ଗବେଷକ ଦୃଢ଼ଭାବରେ କହିଛନ୍ତି, ମହେନ୍ଦ୍ରଗିରି ହିଁ ଜଗନ୍ନାଥ ତତ୍ତ୍ୱର ମୂଳ ଉନ୍ମୟନ






ସ୍ଥଳ । ଏବଂ ଶ୍ରୀମନ୍ଦିର ଉପରେ ଯେବେ ଯେବେ ବିପଦ ଆସିଥିଲା ଶ୍ରୀମନ୍ଦିର ପଛପଟୁ, ଚିଲିକାରେ ଆଣି ଗଞ୍ଜାମ ଜିଲ୍ଲାରେ ପାତାଳି କରାଯାଇଥିଲା । ଗଞ୍ଜାମ ଜିଲ୍ଲାର ସୋନପୁର ଯେଉଁଠି ବାହୁଦା ନଦୀ ଓ ବଙ୍ଗୋପସାଗର ଏକତ୍ରିତ ହେଉଛନ୍ତି, ସେଇ ରାସ୍ତାଦେଇ ଜଗନ୍ନାଥଙ୍କୁ ଆଣି ପାତାଳି କରାଯାଇଥିବ । ପୁରୀ ଶ୍ରୀମନ୍ଦିରରେ ବର୍ଷକରେ ଥରେ ଯେଉଁ ମହାଦୀପ ଉଠାଯାଏ ସେଥିରେ ଟେକିଲିର ମହାରାଜଙ୍କ ନାମରେ ଉଠାଯାଏ । ସମ୍ଭବତଃ ସେ ଶ୍ରୀମନ୍ଦିରକୁ ବିପଦ ସମୟରେ ସାହାଯ୍ୟ କରିଥିବା ହେତୁ ଏହା କରାଯାଏ ବୋଲି ଅନେକେ ମତ ଦିଅନ୍ତି । ତତ୍‌କାଳୀନ ରାଜବଂଶ ଏବେ ନିରୁଦ୍ଦିଷ୍ଟ, ଟେକିଲିର ରାଜା ବର୍ତ୍ତମାନ ନିର୍ବାସନରେ ସ୍ଥାନାନ୍ତର କରିଲେଣି, ରାଜବଂଶ ସବୁ ନଷ୍ଟ ହୋଇଗଲାଣି ।

ତଥାପି କଳିଙ୍ଗ ସ୍ଥାପତ୍ୟର ନିଦର୍ଶନ ସେହି ସମସ୍ତ ମନ୍ଦିର ଏବେ ବି ରହିଛି । କିନ୍ତୁ ଉଣା ଅଧିକେ ଅଧିକାଂଶ ମନ୍ଦିର ଏବେ ଅବହେଳିତ ହୋଇ ରହିଛି । ଓଡ଼ିଶା ସରକାର କୋଟି କୋଟି ଟଙ୍କା ସଂସ୍କୃତି ଏବଂ ଐତିହ୍ୟ ପାଇଁ ଖର୍ଚ୍ଚ କରୁଥିଲେ ସୁଦ୍ଧା ଏହି ଅଞ୍ଚଳରେ ଥିବା ଜଗନ୍ନାଥ ମନ୍ଦିର ମାନଙ୍କୁ କୌଣସି ପ୍ରକାରର ସାହାଯ୍ୟ ମିଳୁନାହିଁ । ମନ୍ଦିରରେ ହେଉଥିବା ଧୂପ ଦୀପ ନୈବେଦ୍ୟପାଇଁ ଗରୀବ ପୁଜାରୀମାନେ ହାତ ପତାଉଛନ୍ତି । ତଥାପି ଜଗନ୍ନାଥଙ୍କ ମନ୍ଦିରକୁ ସେମାନେ ନିଷ୍ଠାର ସହ ଚଳାଉଛନ୍ତି ସେଥିପାଇଁ ସେମାନଙ୍କୁ କୋଟି ଦଣ୍ଡବତ ।

ମୂଳ ଆଲେଖ୍ୟ ଓ ଗବେଷଣା : ଶ୍ରୀ ଲିଙ୍ଗରାଜ ପ୍ରସାଦ ଅମୂଲ୍ୟ ପଟ୍ଟନାୟକ

ଭାଷାନ୍ତରଣ ଓ ଉପସ୍ଥାପନା : ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ


http://www.appsgeyser.com/4368717

# ରଥଯାତ୍ରା



ହିମାଂଶୁ ଶେଖର ବାରିକ

ଆଜି ରଥଯାତ୍ରା ଦେଖିବାକୁ ପରା
ଲାଗିଛି ଭିଡ଼ ଶ୍ରୀକ୍ଷେତ୍ରରେ,
ରତ୍ନ ସିଂହାସନ ଛାଡ଼ି ଭଗବାନ
ଦେଖାଦେବେ ବଡଦାଣ୍ଡରେ ।।
ବରଷକେ ଥରେ ମିଳେ ସଉଭାଗ୍ୟ
ଦେଖିବାକୁ ପ୍ରଭୁ ବାହାରେ,
ମାଉସୀ ଘରକୁ ଯିବା ବାହାନାରେ
ମିଶନ୍ତି ଭକ୍ତ ଗହଣରେ ।।
କେତେ ଦୁଃଖିରଙ୍କୀ ପତିତ ବିଧର୍ମୀ
କରନ୍ତି ତାଙ୍କର ଦରଶନ,
ଦେଉଳ ପ୍ରବେଶ ନିଷେଧେ ନିରାଶ
ଅଭିଳାଷ ହୁଏ ପୂରଣ ।।
ଲକ୍ଷ ଲକ୍ଷ ଭକ୍ତ ହୋଇ ସମାଗମ
ଅରଜୁଛନ୍ତି ମହାପୁଣ୍ୟ,
ମୋକ୍ଷ ପ୍ରାପ୍ତ ଆଶେ ବିଲୋକନ କରେ
ରଥର ଉପରେ ବାମନ ।।






ଦିବ୍ୟକାନ୍ତି ରୂପ ଦେଖି ପୁଲକିତ
ହୁଅଇ ହୃଦ ସରସିଜ
ଜନମ ଜନମ ସଂପର୍କ ତା' ସାଥେ
କରାଏ ସ୍ମର କଳାମୁଖ ।।

ଦେଖି ଅଛି ଯିଏ ଜାଣି ଅଛି ସିଏ
ସେ ରଥ ଯାତ୍ରାର ମହିମା
ଦାରୁବ୍ରହ୍ମଙ୍କର ମାନବୀୟ ଲୀଳା
ଦେଇ କେ ପାରିବ ଉପମା ।।

ବରିଷ୍ଠ ଅଡ଼ିଟ୍ ଅଧିକାରୀ
କ୍ୱାର୍ଟର ନଂ : ଟାଇପ୍ ୩, ୨୦୧
ନୂଆ ଏଜି କଲୋନୀ
ନୟାପଲ୍ଲୀ, ଭୁବନେଶ୍ୱର - ୭୫୧୦୧୨
ଓଡ଼ିଶା
ଦୂରଭାଷ : ୯୯୩୭୧୨୫୮୨୪
ଇମେଲ୍ : hsbarik1970@gmail.com





# ଆତ୍ମା ନନ୍ଦିଘୋଷ



ପ୍ରତିଭା ପ୍ରିୟଦର୍ଶିନୀ

ଖଣ୍ଡୁଆ ପାଟର ପିତାମ୍ବରୀ ବାସ

ରଙ୍ଗ ଅଧରରେ ସମ୍ମୋହନୀ ହସ

ଅଧା ଗଢ଼ା ଅଙ୍ଗେ ପୂର୍ଣ୍ଣର ଆଭାସ

ଦାରୁବ୍ରହ୍ମ, ବଡ଼ଦିଅଁ, ନୀଳାଦ୍ରି ନିବାସ ।।

ତୁମେ ମହୋଦଧି, ମୁଁ କ୍ଷୀଣ ସରିତା

ତୁମେ ମହାଦ୍ରୁମ, ମୁଁ କ୍ଷୁଦ୍ର ଏକ ଲତା

ତୁମେ ସୂର୍ଯ୍ୟପ୍ରଭା, ମୁଁ ଜ୍ୱଳନ୍ତ ସଳିତା

ମୁଁ ତୁମ ସନ୍ତାନ, ପ୍ରଭୁ ତୁମ୍ଭେ ମାତା ପିତା ।।

ମୋ ଛୋଟ ଜୀବନ କରିଦିଅ ଧନ୍ୟ

ଶ୍ରୀବତ୍ସ ପରିକା ହୃଦେ ଥାପି ପଦଚିହ୍ନ

ମୋ ପିଣ୍ଡେ ପହଣ୍ଡି ହୁଅ, ହେ ଚକନାୟନ

ଘେନବାରେ ମୋର ଆତ୍ମ ନିବେଦନ ।।




ଭରିଦିଅ ନାଥ ଦୃଢ଼ ଇଚ୍ଛାଶକ୍ତି

ସଂସାର ସୁହୃଦେ ବ୍ରତୀ ହେଉ ମତି

ସତ୍ୟ, ନ୍ୟାୟ, ଧର୍ମ, ସୁକର୍ମ, ସୁନୀତି,

କରି ବୃଦ୍ଧି କରେ ମୋ ଜାତିର ଖ୍ୟାତି । ।

ଆତ୍ମା ନନ୍ଦିଘୋଷେ ହୁଅ ବିରାଜିତ

ଧୋଇଦେବି ପଦ ଝରାଇ ଲୋତକ

ମନ ରଜ୍ଜୁ ବାନ୍ଧି ଟାଣି ନେବି ରଥ

ପ୍ରାଣ ଘୋଷୁ ଥିବ, ଜୟ ଜଗନ୍ନାଥ । ।

କଟକ




# ମୁଁ



ପ୍ରବୋଧ ଚନ୍ଦ୍ର ମୁଦ୍ରା

ଏକାକ୍ଷର ଶବ୍ଦ ଉତ୍ପତି ନାମ ଅଟେ "ମୁଁ" କାର ।
ଶବ୍ଦ ଉଚ୍ଚାରଣ ମାତ୍ରକେ ଲାଗେ ଗୁରୁ-ଗମ୍ଭୀର ।୧ ।
ପ୍ରଥମ ପୁରୁଷ ଅଟଇ ବ୍ୟାକରଣ ଶାସ୍ତ୍ରର ।
କର୍ତ୍ତା ରୂପେ ବାକ୍ୟେ ପ୍ରୟୋଗ ହୁଏ ମୁଁ ନିରନ୍ତର ।୨ ।
ମୁଁ କାର ଶବ୍ଦଟି ସର୍ବଦା ଅହଂଭାବ ପ୍ରତୀକ ।
ଗର୍ବ ଅହଂକାରେ ମନୁଷ୍ୟ ହୁଅଇ ଅବିବେକ ।୩ ।
କର୍ତ୍ତା ମୁହିଁ ବୋଲି ନିଜକୁ କରେ ବୃଥାଭିମାନ ।
ମଦମତ୍ତ ହୋଇ ସଭିଙ୍କୁ କରେ ସେ ଅପମାନ ।୪ ।
ଅସହିଷ୍ଣୁ - ଆତ୍ମବଡ଼ିମା - ପରଶ୍ରୀକାତରତା
ମୁଁ କାର ଶବ୍ଦର ଅଟନ୍ତି ଏମାନେ ଜନ୍ମଦାତା ।୫ ।
ଅନର୍ଥ ଶବ୍ଦଟି ମୁଁ କାର ସେ ମହାଭୟଙ୍କର ।
ଧନ - ଯୌବନ -ପ୍ରଭୁତ୍ୱ ଏ ସବୁ ତା' ସହୋଦର ।୬ ।
ମୁଁ କାରରୁ ମହାଭାରତ - ରାମାୟଣର ସୃଷ୍ଟି ।
ଗର୍ବଗାରିମାରେ ରାବଣ ହେଲା ତ୍ରିଲୋକପତି ।୭ ।
ମହାମାନୀ ଦୁର୍ଯୋଧନ ଯେ ହେଲେ ହସ୍ତିନାପତି ।




ମୁଁ କାର ପଣରୁ ଉଭୟେ ହୋଇଗଲେ ଯେ ଇତି ।୮ ।
ପ୍ରବଳ ପ୍ରତାପୀ କଂସର ଥିଲା ମୁଁ କାର ଭାବ ।
ଦର୍ପ - ଔଦ୍ଧତ୍ୟକୁ ବିନାଶ କରିଲେ ବାସୁଦେବ ।୯ ।
ବିଶ୍ୱାମିତ୍ର ଅହମିକାକୁ ଧ୍ୱଂସ କଲେ ବଶିଷ୍ଠ ।
ଶାନ୍ତ ଓ ଉଦାର ଗୁଣରେ ଯଶ କଲେ ସ୍ଥାପିତ ।୧୦ ।
ଅହମିକା ସହ ମମତ୍ୱ ଭାବ ଅଟେ ନିକୃଷ୍ଟ ।
ସଙ୍କୀର୍ଣ୍ଣତା ଥାଏ ମମତ୍ୱେ ବୁଦ୍ଧି ହୁଏ ବିନଷ୍ଟ ।୧୧ ।
ସ୍ୱେଚ୍ଛାଚାର ଅଟେ ଜନକ ଗର୍ବ - ଅହଙ୍କାରର ।
ଗୁରୁ - ଗୁରୁଜନ ସଭିଙ୍କୁ କରେ ସେ ହତାଦର ।୧୨ ।
ମୁଁ କାର ଭାବଟି ବ୍ୟକ୍ତିର ଅଟଇ ତାମସିକ ।
ନୀଚ - ଘୃଣ୍ୟ କାର୍ଯ୍ୟ କରିଣ ହୁଏ ଅସାମାଜିକ ।୧୩ ।
ସାଧୁତା ଗୁଣଟି ସର୍ବଦା ଅଟେ ମୁଁ କାର ଶୂନ୍ୟ ।
ମାନବରୁ ହୁଏ ମହାତ୍ମା ସର୍ବେ ଦିଅନ୍ତି ଧ୍ୟାନ ।୧୪ ।
ଗର୍ବୀ - ଅହଙ୍କାରୀ ମନୁଷ୍ୟ ଅଟେ ମହାନାସ୍ତିକ ।
ନ ରଖି ଈଶ୍ୱରେ ବିଶ୍ୱାସ କରେ ପାପ ଅନେକ ।୧୫ ।
ଅର୍ଜୁନଙ୍କ ଅହଂଭାବକୁ ପ୍ରଭୁ କରିଲେ କ୍ଷମା ।
"ମୁଁ" ନ ମଲେ ଅର୍ଜୁନ ! ମୋତେ ତୁ ନ ପାଇବୁ ଜମା ।୧୬ ।




ଅହଙ୍କାରୀ ହିଟଲର୍‌ର ଥିଲା ସ୍ୱେଚ୍ଛାଶାସନ ।

ନରହନ୍ତା ରୂପେ ବିଶ୍ୱରେ ହେଲା ପରିଗଣନ ।୧୭ ।

ହିଟଲର୍‌ର ଅହଂଦୁର୍ଗତି ହେଲା ଅଧୋପତନ ।

ତା' ସାମ୍ରାଜ୍ୟ ହେଲା ବିଧ୍ୱଂସ ନିଜେ ହୋଇଲା ଚୂର୍ଣ୍ଣ ।୧୮ ।

ରବି - ଶଶୀ - ତାରା ଉର୍ଦ୍ଧ୍ୱରେ ସଦା ବିରାଜୁଥାନ୍ତି ।

ନିରହଂକାରେ ସଭିଙ୍କୁ ଜ୍ୟୋତି ପ୍ରକାଶୁଥାନ୍ତି ।୧୯ ।

ମୁଁ କାରର ପରିଭାଷା ଯେ ଅଟଇ ନିର୍ବୋଧତା ।

ଏହି ଦୁର୍ଗୁଣ ତ୍ୟଜି ନରରେ ଦେଖାଯାଏ ସାଧୁତା ।୨୦ ।

ଅହଂ - ମମତ୍ୱର ଚିନ୍ତାରୁ ହୁଏ ଯିଏ ମୁକତ ।

ମହାତ୍ମା ଭାବରେ ଏ ଭବେ ସେହି ହୁଏ ପୂଜିତ ।୨୧ ।

ମୁଁ କାରର ସ୍ରଷ୍ଟା ଅଟଇ ଷଡରିପୁ ନରର ।

ମହାବ୍ୟାଧି ହୋଇ ତାହାକୁ ନାଶ କରେ ସତ୍ୱର ।୨୨ ।

ମୁଁ କାରକୁ ତ୍ୟଜି ଉଦାର ଯେବେ ହୋଇବ ନର ।

ଈଶ୍ୱର କୃପାରେ ମହାନ ହେବ ସେ ନିରନ୍ତର ।୨୩ ।

ଗ୍ରା/ପୋ - ସାଙ୍କୁଡା, ଭାୟା - ସୁମଣ୍ଡଳ,

ଜିଲ୍ଲା - ଗଞ୍ଜାମ, ଭ୍ରାମ୍ୟଭାଷ - ୭୮୯୪୯୧୭୧୩୧






# ଆତ୍ମଜା



ସ୍ୱାଗତିକା ପ୍ରିୟଦର୍ଶିନୀ ଦାଶ

'ମା' ମୋର ମୋତେ ବଞ୍ଚିବାକୁ ଦେ
ମତେ ହଜିଯିବାକୁ ଦେ ତୋ ଭିତରେ
ମତେ ଛୁଇଁବାକୁ ଦେ ତୋ ପଣତକାନିକୁ
ମତେ ଅନୁଭବ କରିବାକୁ ଦେ ଏ ପୃଥିବୀର ବିଶାଳ ବିସ୍ମୟକୁ
ଏମିତି ତୁ ମୋତେ ତୋ'ଠାରୁ ଦୁରେଇ ଦେଏନା ।

ଜାଣୁ ମା', ମୁଁ ପରା ତୋ ସୃଷ୍ଟି
ତୋର ବିନ୍ଦୁ ବିନ୍ଦୁ ରକ୍ତର ସମାହାର ମୁଁ,
ତୋ' ଭିତରେ ତ ଦେଖିବାକୁ ଚାହେଁ ମୁଁ ମୋ ନିଜକୁ
ତୋ' ଛଡ଼ା ମୋ ଅସ୍ତିତ୍ୱ କାହିଁ ଯେ ?

କାହିଁକି ତୁ ନିଷ୍ଠୁର ହୋଇଯାଉଛୁ ମା'
ମୁଁ ଝିଅଟିଏ ବୋଲି, ତୁ ମତେ ଦୂରେଇ ଦେଉଛୁ
କାହିଁକି ଏ ପୃଥିବୀର ବିସ୍ମୟକୁ ଦେଖିବାରୁ
ବଞ୍ଚିତ କରୁଛୁ ମତେ ? ମୋର କଣ ଭୂଲ ମା ?

ମା' ମୋର ସତରେ ତୁ କଣ ବଞ୍ଚିପାରିବୁ
ମୋ ବିନା, ମୋ ମା' ଡାକରେ ପରା
ତୋ ନାରୀ ଜୀବନର ସାର୍ଥକତା
ମୁଁ ଜାଣେ ତୁ କେବେ ତୋ'ଠାରୁ ଦୁରେଇ ଦେବୁନି ମୋତେ
ତେଣୁ ସଞ୍ଚରିନେ ତୋ ଭିତରେ ମୋତେ ।

ତୁ ଡରିଯାଅନ୍ତି ଅପରର ଶ୍ଳେଷ ମିଥ୍ୟା କାହାଣୀରେ






ମୁଁ ଚାଲିବି ସାଥିରେ, ତୋ'ର ପ୍ରାଣର ଆତ୍ମଜା ହୋଇ
ଭରିଦେବି ଆଞ୍ଜୁଳିରେ ତୋ'ର କୁଢ଼ କୁଢ଼ ସୁଖ
ଛୁଇଁଦେବି ଦୂର୍ ଦିଗ୍‌ବଳୟକୁ, ହିରଣ୍ମୟୀର
ଆଭାନେଇ ଉଦ୍‌ଭାସିତ କରିବି
ପୃଥିବୀକୁ, ଜୀବନର ଶେଷ ପର୍ଯ୍ୟନ୍ତ
ତୋତେ ହିଁ ମନ ମନ୍ଦିରରେ ପୂଜୁଥିବି ।

ମା' ମୋର ତୁ ଥରେ ମୋତେ
ତୋ' ପୃଥିବୀକୁ ଆସିବାକୁ ଦେ
ଦେଖିବାକୁ ଦେ ତୋ'ର ସ୍ୱର୍ଣ୍ଣାଭ ପ୍ରତିମୂର୍ତ୍ତିକୁ
ଭିଜିବାକୁ ଦେ ତୋ'ର ସ୍ନେହ ପ୍ରେମର ମନ୍ଦାକିନୀରେ
ମୁଁ ବି ଉଚ୍ଚାଟ ସ୍ୱରରେ କହିଉଠେ
ମୁଁ ତୋ'ର ପ୍ରାଣର ଆତ୍ମଜା ।

ସଦର ହରିଅନ୍ତା, ଜିଲ୍ଲା : କଟକ ପିନ୍ : ୭୫୪୦୦୩
ଦୂରଭାଷ : ୮୫୯୪୯୧୯୭୫୯




# ଉତ୍କଳର ଲକ୍ଷ୍ମୀ



ସ୍ମୃତି ରଞ୍ଜନ ପାଣିଗ୍ରାହୀ

ଆଜି ଯେବେ ଉତ୍କଳର ଲକ୍ଷ୍ମୀ ଘୁରିବୁଲେ
ଅନାଥିନି ଅନାହାରେ ଅବେଶରେ
ଆଜି ଯେବେ ଉତ୍କଳ ଲକ୍ଷ୍ମୀ ଭିକ୍ଷାକରେ ଫୁଟପାଥରେ
ପେଟ ପାଇଁ ଦାନା
ପିଠି ପାଇଁ କନା
ଖୋଜେ ଦ୍ୱାରେ ଦ୍ୱାରେ

ଆଜି ଉତ୍କଳର ଶିରୀ ହୁଏ ନିଷ୍ପେଶିତ ପାଶବ ହସ୍ତରେ
ମରେ ପୁଣି ଜଳି ପୋଡ଼ି ଯୌତୁକ ପାଇଁ ଶାଶୁ ଘରେ
ମୁଁ ଦେଖେ ତା ଆଖିର ଲୁହ
ପଡ଼େ ମୁକ୍ତା ହେଇ ରାସ୍ତାରେ ରାସ୍ତାରେ
ଯେତେବେଳେ ଧର୍ଷିତା ପୀଡ଼ିତା ହୁଏ ଏହି ସମାଜରେ

ସେ ପୁଣି ଲଗାଏ ଅତର
ପାଦରେ ଅଳତା




ଓଠର ଲିପ୍‌ଷ୍ଟିକ୍ ତାର ଇତଃସ୍ତତ ହୁଏ ବେଶ୍ୟାଗୃହେ

ଆଖି ଲୁହେ ଶାଢ଼ୀ ଭିଜେ

ନୀରବେ ନୀରବେ...

ସେତେବେଳେ

ହଁ ଠିକ ସେତିକି ବେଳେ

ମୋ ଘରର ଧନ ଲକ୍ଷ୍ମୀ ଯଶ ଲକ୍ଷ୍ମୀ ଗୃହ ଲକ୍ଷ୍ମୀ

ଶୋଇପଡ଼େ ଆଲମାରୀ ତଳେ

ଅଥବା ରବର ଦିଆ ଟଙ୍କାବିଡ଼ାରେ

ନିଶ୍ଚିତ ରେ........

ସାଇ ଦୁର୍ଗା କୋଅପରେଟିଭ୍ ସୋସାଇଟି

୪୯, ବିଟି ରୋଡ଼, ମୋଚିପଡ଼ା, କୋଲକାତା, ୭୦୦୧୧୯

୨୪ ଉତ୍ତର ପରଗଣା, ପଶ୍ଚିମବଙ୍ଗ


http://www.appsgeyser.com/4368717



# ଭଲ୍ ଆଉର୍ ଖରାପ୍



ଆଶୁତୋଷ ମେହେର

ସମଲପୁରୀ ଭାଷାର କବିତା

ଭଲର କଥା ଶୁନଲେ ପୁତା
ଲାଗସି ପିତା ପହେଲା,
ହେଲେ ମାନଲେ ଭଲ ଫଲସି
କଟସି ସବ ଝମେଲା ।।
ଖରାପ କଥା ଚକମକିଆ
ହସିଁ ଖାଇବାର ଲିଆ,
ଚଣ୍ଟି ଭିତରେ ସରକଟବା
ଆଏଁଖ ହୋବା ଯେ ଠିଆ ।।
ତହିଁକି ଥିବୁ ବାବୁରେ ହେଜି
ଭଲ କେନଟା ଖରାପ
ଆଏଁଖ ଖୁଲି ବିଚାରି ନେବୁ
କରି ହିସାବ ନିସାପ ।।
ଭଲଟା ଭଲ ଫୁଟସି ଖୁଲି
ମହକ ଫୁଲର ବାସ,
ଖରାପ କାମ ନିଜର ବାଟେ
ହେଇ ଯାଏସି ଯେ ନାଶ ।।

୫୪ ଆର୍ଯ୍ୟପଲ୍ଲୀ
କିଟ୍ ଛକ,ପଟିଆ
ଭୁବନେଶ୍ୱର ୭୫୧୦୨୪
ମୋବାଇଲ ୯୪୩୭୦୮୫୩୯୬






# ପୁରୁଷ ପଥର ନୁହେଁ



ବିନୟ ମହାପାତ୍ର

ବେଳେ ବେଳେ ଉଦାସ
ହୋଇଯାଏ ମନ,
କାନ୍ଦିବାକୁ ଇଚ୍ଛା ହୁଏ,
କାହା କାନ୍ଧରେ ଭରାଦେଇ
ତା ଛାତିରେ ମୁହଁ ଗୁଞ୍ଜି,
ମନ ଭରି ବହୁତ କାନ୍ଦନ୍ତି ।
ଯେତେ ସବୁ ଲୁହ ଜମାଟ ବାନ୍ଧିଛି,
ଏ ମନର ଗଭୀର ଗୁମ୍ଫା ମାନଙ୍କରେ,
ଯେତେ ସବୁ କୋହ ଦବି ଯାଇଛନ୍ତି,
ପୁରୁଷ ହେବାର ମିଥ୍ୟା ଅଭିମାନେ,
ସବୁ କିଛି ବୁହାଇ ଦିଅନ୍ତି ।

ସୀତା ତ ବହୁତ କାନ୍ଦିଛି,
ବିରହିଣୀ ରାଧାର ଅଶ୍ରୁରେ
ଯମୁନା ଭରିଛି,
ହେଲେ ଏ ପୁରୁଷ ପୁରୁଷୋତ୍ତମର
ମୁଖୋଟାର ପଛପଟେ
କେତେ ଲୁହ ଲୁଚାଇ ରଖିଛି,






କେତେ ଲୁହ ନିଇତି ପିଉଛି,

କିଏ ବା ଦେଖିଛି, କିଏ ବା ଜାଣୁଛି ?

ପୁରୁଷର ପଥର ହୃଦୟ, ସମସ୍ତେ କହିବେ,

ହେଲେ ଏ ହୃଦୟରେ ରକ୍ତ ବି ବହେ,

ପ୍ରତି ମୁହୂର୍ତ୍ତରେ ସ୍ପନ୍ଦନ ଦିଏ,

ଅନାବିଳ ପ୍ରେମ ଆଉ ବାତ୍ସଲ୍ୟର

ମମତାର ଧାର,

ଅହରହ ନିତି ବୋହୁ ଥାଏ,

ଯେତେ ବୋହେ ନାରୀ ହୃଦୟରୁ ।

ହେଲେ ପାରେନା ତ ବୁଝି,

ମନ ଏତେ ଉଦାସ କାହିଁକି,

ଏତେ ଲୁହ ଆସିଲେ କେଉଁଠୁ,

କେଉଁଠୁ ଆସିଲେ ଏତେ ଲୁହ

ଅଜସ୍ର ବେଦନା, କେଉଁଠାରୁ ଆସି

ଜମାଟ ବାନ୍ଧିଲେ କେମିତି,

କାହା ପାଇଁ ବ୍ୟାକୁଳ ଏ ମନ

କେଉଁ ଅଭାବ ମନକୁ ଦୁର୍ବଳ କରିଯାଏ,

ଉଦାସୀର ଅନ୍ଧାରେ ପେଲି ଦିଏ,

ରୁଦ୍ଧ ଏ ଶ୍ୱାସ କୋହ ଉଠି ଯାଏ ।






ସୀତାମାତା କେତେ କାନ୍ଦିଛନ୍ତି

କଳଙ୍କିନୀ ହୋଇ,

ରାମଙ୍କର ଲୁହ ଯେତେ

ସୀତାଙ୍କୁ କଳଙ୍କିତ କରି,

ସେ ଦୁଃଖର ଅଶ୍ରୁ

ରାଧା ବିରହରେ ଶ୍ୟାମ ଯନ୍ତ୍ରଣାର ଲୁହ

ଅହଲ୍ୟାକୁ ଅଭିଶାପ ଦେଇ

ଗୌତମଙ୍କ ପଶ୍ଚାତାପ ଅଶ୍ରୁ

ପୁତ୍ରଶୋକେ ହରିଶ୍ଚନ୍ଦ୍ରଙ୍କ କାରୁଣ୍ୟ

ପାଣ୍ଡବଙ୍କ ବିରୁଦ୍ଧେ ଲଢ଼ି

କର୍ଣ୍ଣର ବିଳାପର ଲୁହ

ଟୋପିଏ ବି ଝରି ନାହିଁ

ପୁରୁଷର ଅଭିମାନ ଆଉ ମର୍ଯ୍ୟାଦାର

ମିଥ୍ୟା ଆଡ଼ମ୍ବର ପଛେ,

ସେଇ ସବୁ ଲୁହ ସତେ ଆଜି

ବୋହି ଯିବାକୁ ସତତ ବ୍ୟାକୁଳ ।




# ନିଜକୁ ମୁଁ ପାଇଗଲି



କୌସ୍ତୁଭ ପଣ୍ଡା

ରାତିର ସପନ ଆରମ୍ଭ ହୁଅଇ

ତୁମ ଛବି ନେଇ ମନେ,

କି ଗୁଣୀ କରିଛ କାଉଁରୀ ମାୟାରେ

ଭୁଲିପାରୁନାହିଁ କ୍ଷଣେ ।

ସତେଜ ଧବଳ ବସ୍ତ୍ରରେ

ଆହା କି ସେ ସ୍ମିତ ହସ,

କୋଟି ବରଷର ଦୈବ୍ୟ ସ୍ୱର୍ଶଯୁକ୍ତ

ଅମୃତ ପାତ୍ରର ରସ ।

ସ୍ୱର୍ଶ ନିବାରିତ କ୍ଷଣ ଉଦ୍ଦୀପିତ

ଚିତ୍ର ଆସେ ଯାଏ କାହିଁ,

ସୁନ୍ଦର ତୃପ୍ତିର ଅବସାଦ ସିନା

ତାହାର ଉପାୟ ନାହିଁ ।

ସୁନ୍ଦର ମୁହୂର୍ତ୍ତ ଜଟିଳ ମିଶ୍ରଣେ

ଆଜି ତୁମ ସ୍ମୃତି ସତେଜ,

କାହା ପାଇଁ ଅଟେ ଦୂରତା ପଥର






ମୋ ପାଇଁ ଉଦିତ ସୂରଜ ।

ଗଢ଼ିଥିଲି ଯାହା ମୋ ଦୁଇ ହାତରେ

କେମିତି ଭାଙ୍ଗିବି କହ,

ସୂକ୍ଷ୍ମମାୟା ସିନା ତୁଟି ଯାଇପାରେ

ଭାଙ୍ଗେ କି ପ୍ରେମର ମୋହ ?

କ୍ଷଣଭଙ୍ଗୁର ଏ ସ୍ୱପ୍ନର ଅନ୍ତ

ଘଟିଯାଏ କ୍ଷଣକରେ.

ତୁମେ ଚାଲିଯାଅ ଆଖି ଖୋଲିଗଲେ

ଛାଡ଼ି ଛାପ ଏ ମନରେ ।

ସେ ଛାପକୁ ନେଇ ଖୋଜିବୁଲେ ମୁହିଁ

କାଳେ ମିଳିଯିବ ବୋଲି,

ପ୍ରତିବିମ୍ବ ତୁମ ଖୋଜୁ ଖୋଜୁ ଦିନେ

ନିଜକୁ ମୁଁ ପାଇଗଲି ।

ନିଜକୁ ମୁଁ ପାଇଗଲି ।

ବି. ଫାର୍ମା ଛାତ୍ର, ରୋଲାଣ୍ଡ ଫାର୍ମାସୀ କଲେଜ

ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା




# ବଗିଚାର ଗୋଲାପ



ମିନତୀ ପ୍ରଧାନ

ଗୋଲାପ
ତୋଳିଲେ ସିନା ସହିବାକୁ ହେବ କଣ୍ଟାର ଆଘାତ
ହାତ ତୁମ ହୋଇପାରେ
ରକ୍ତାକ୍ତ, କ୍ଷତାକ୍ତ ! ! !
ପାଖରୁ ଦେଖୁନ
ଉପଭୋଗ କରି ପାରିବ
ତା' ରୂପ ଓ ସୌନ୍ଦର୍ଯ୍ୟ
ନ ଛୁଇଁ ଭିଜିପାରିବ
ସୁଗନ୍ଧିତ ବାସ୍ନାରେ ତାହାର ।

ନିତି ଆସି ବଗିଚାକୁ
ଦେଖିବ ତା କଳିରୁ
ଫୁଟନ୍ତା ପର୍ଯ୍ୟାୟ ।
ପବନର ଦୋଳି ଖେଳି
ଝୁଲୁଥିବ ସିଏ ଆଉ ତାର
ଖିଲି ଖିଲି ହସ ।
ଜ୍ୟୋସ୍ନା ବିଧୁରିତ ରଜନୀରେ
ମେଲାଇ ତା ରୂପର ପସରା ।

ବଗିଚାର କୋଳେ
ରହିଲେ ସେ ବଞ୍ଚିବ




ଅନେକ ଦିବସ ।

ଝାଉଁଳିବ ତ ନିଶ୍ଚୟ
କେବେ କେମିତି
ଆସ୍ତେ ଆସ୍ତେ କରି
ପାଖୁଡ଼ା ପରେ ପାଖୁଡ଼ା
ଖସିବ ଗଛ ମୂଳେ
ବିଛଣା ପରିକା ।
ଶୁଷ୍କ ହୋଇ ରହିବ ସତେଜ
ହେବନାହିଁ ଖିନଭିନ୍ ଦଳାଚକଟାରେ ।

ସୂର୍ଯ୍ୟକିରଣ, ପବନ ଓ ମାଟିର
ସ୍ପର୍ଶରେ ଆସ୍ତେ ଆସ୍ତେ ପରିପକ୍ୱ
ପାଖୁଡ଼ା ତା ମାଟିରେ ମିଶିବ ।

ନିସ୍ତେଜ, ନିଷ୍ପ୍ରଭ ଲୀନ ହେବା
ପୂର୍ବରୁ ଗୋଲାପ ଛାଡ଼ିବ
ତା ପାଖୁଡ଼ାର ରଙ୍ଗ,
ତା ବାସ୍ନାର ମହକ,
ସେଇ ଆର୍ଦ୍ରମାଟି
ଆଉ ଉପବନ କୋଳେ
ଯେଉଁଠି ବିତିଛି ତାର
କଳିରୁ ମାଟି ଯାଏ
ବିସ୍ତୃତ ଜୀବନ ।




# ଗାନ୍ଧାରୀ : ଜନତା



ନୃସିଂହ ଚରଣ ବେହେରା

ଗାନ୍ଧାରୀ ସାଜିଛି ଆଜିର ଜନତା
ଆଖିରେ ପଟିକୁ ବାନ୍ଧି
ଚାରିଆଡ଼େ ଖାଲି ଦୁର୍ନୀତି ବଢୁଛି
ଦିଶୁନାହିଁ ତାକୁ କିଛି ।
ଲାଞ୍ଚ ଦେବାପାଇଁ ଡର ଲାଗୁନାହିଁ
ଗୋପନେ ଦେଉଛି ଲାଞ୍ଚ
ଲାଞ୍ଚ ନେବାଲୋକ ଗୋପନେ ନେଉଛି
ନହୋଇଣ ଦୋ ଦୋ ପାଞ୍ଚ ।
ରାଜନେତା ସବୁ ସୁଇସ୍ ବ୍ୟାଙ୍କରେ
ରଖୁଛନ୍ତି କଳା ଟଙ୍କା,
ନୋଟ ବଦଳରେ ଭୋଟ କିଣୁଛନ୍ତି
ରାଜନୀତି ରାସ୍ତା ବଙ୍କା ।
ରାମ ରାଜ୍ୟର ସ୍ୱପ୍ନ ଦିନେ ଦେଖିଥିଲେ
ଆମ ଏ ଜାତିର ପିତା
ନିଜ ସ୍ୱାର୍ଥପାଇଁ ଆମେ ମାନେ ମିଶି






କରିଛୁ ସେ ସ୍ୱପ୍ନ ଫିକା ।

ଜନ ସଚେତନା ପାଇଁ କି ଆନ୍ନାଜୀ

କରିଲେ ଯେ ଅନସନ

ଦୁର୍ନୀତି ବିରୋଧୀ ଅଭିଯାନ ତାଙ୍କ

ବଢ଼ାଏ (ନେତାଙ୍କ) ହୃଦସ୍ପନ୍ଦନ ।

ଜନ ଲୋକପାଳ ବିଲ୍‌ଟି ଆମର

ହରାଇଛି ତା ଅସ୍ତିତ୍ୱ,

ଆମେ ଆଜି ଆସ ସଚେତନ ହେବା

ଏହା ହିଁ ଗୁରୁଦାୟିତ୍ୱ ।

ଆଖିର ପଟିକି ଖୋଲିକରି ଆସ

ସଭିଏଁ ନେବା ଶପଥ,

ଦୁର୍ନୀତିମୁକ୍ତ ଆମ ଦେଶପାଇଁ

ଆମେ ନେବା ଆଜି ବ୍ରତ ।

ଭୋଇନଗର

ଭୁବନେଶ୍ୱର




# ଋତୁ ବଦଳିଯାଏ



ଦେବସ୍ମିତା ବେହେରା

ଋତୁପରେ ଋତୁ ବଦଳିଯାଏ

ଋତୁ ତ ଏକ ରୂପସୀ ମାଲ୍ୟାଣୀ
ଧରାକୁ ଆସେ ତା' ରୂପର ପସରା ମେଲି
ତା'ରୂପର ପସରାରେ ସୁଶୋଭିତ ହୁଏ
ଜନପଥରୁ ରାଜନଅର
କୁଞ୍ଜବନରୁ ନିକାଞ୍ଚନ ନଈକୂଳ
ତା' ପସରାରୁ ବାହାରି ଆସେ
ବଦଳୁଥିବା ଋତୁ ସହ ସମ୍ପର୍କର ନୂତନ ପରିଭାଷା
ସେ ସୃଷ୍ଟିକରେ ସଭିଙ୍କର ଅବୁଝାମନରେ
ପ୍ରେମର ନୂଆ ଭାବାନ୍ତର
ଯାହାର କୋମଳ ସ୍ପର୍ଶରେ ପଥରଟିଏ ପାଏ ଜୀବନ୍ୟାସ
ଆଉ ସଭିଙ୍କ ଜୀବନରେ ଗଢ଼ି ଉଠେ
ବିଶ୍ୱାସର ସୁଦୃଢ଼ ଉଆସ ।
ଋତୁ ଏକ ସୁନ୍ଦରୀ ଅପସରା






ଯିଏ ଲେଖିପାରେ ଜୀବନର ବ୍ୟାକରଣ

ଆଉ ଧୃବସତ୍ୟର ମହାକାବ୍ୟ

ଯିଏ ଅନ୍ଧାର ରାତିରେ ଏ ଧରାକୁ

ଚୁପ୍ ଚାପ୍ ଓହ୍ଲାଇ ଆସି ପାରିଦିଏ

ନିଜର ରେଶମ ପଣତ କାନିକୁ

ଯାହା ସାଉଁଟି ନିଏ ଚଲାପଥର ସବୁ କଣ୍ଟା

ବିଛାଡ଼ି ଆଶାର ଅସଂଖ୍ୟ ଫୁଲକୁ

ଦୁଃଖ ବିଷାଦକୁ ଶୋଷିନିଏ ନିଜ ନିଃଶ୍ୱାସରେ

ଆଉ ବଞ୍ଚିବାର ରାହା ଦେଖାଇ

ହାତ ଧରି ଆଗେଇ ନିଏ ସଭିଙ୍କୁ ।

ଋତୁ ନିଜ ପସରାରେ ସମ୍ମୋହିତ କରେ

ଗୋଟିକ ପରେ ଗୋଟିଏ ରୂପ ଦେଖାଇ

ଜ୍ୟେଷ୍ଠରେ ପ୍ରଖର ରୌଦ୍ରତାପ

ବୈଶାଖରେ ଝାଞ୍ଜିବର୍ଷା, ଶ୍ରାବଣରେ ଶୁଷ୍କତା

ଶୀତରେ ଶୀତଳତା ଆଉ ବସନ୍ତରେ ବିଚିତ୍ର ବର୍ଣ୍ଣ

ନୀରବରେ କବିମନରେ ସୃଷ୍ଟିକରେ

ଅସଂଖ୍ୟ ଅକୁହା ଅବ୍ୟକ୍ତ ଗଳ୍ପ






ଆଉ ଅଗଣିତ କବିତାର ଧାରା

ଯା'ର ପ୍ରତିଟି ସୁପ୍ତ ଅନୁଭବରେ

ରୋମାଞ୍ଚ ମାନଙ୍କର ବିଦଗ୍ଧ ଶବ୍ଦ

ଭାବନାର ଅଗଣିତ ଶବ୍ଦଙ୍କର ସଂଦିଗ୍ଧ ବ୍ୟବଚ୍ଛେଦ

ବଦଳି ଯାଏ ସମୟର ଚକ୍ରସାଥେ

ଠିକ୍ ଋତୁ ପରେ ଋତୁ ବଦଳିବାପରି ।

ୟୁନିଟ୍ -୯ (ଫ୍ଲାଟ୍), ବାୟାବାବା ମଠ ଲେନ୍

ଭୁବନେଶ୍ୱର, ୭୫୧୦୨୨

ଦୂରଭାଷ : ୯୯୩୭୧୪୩୬୯୧




# ଅକାଳ ବାର୍ଦ୍ଧକ୍ୟ



ଅନୁପମ ବେହେରା

ଅଙ୍ଗାରକାମ୍ଳ ମାଡ଼ି ବସିଥାଏ,
ଅମ୍ଳଜାନର ସ୍ଥାନ,
ଅକାଳ ବାର୍ଦ୍ଧକ୍ୟ ନେଇଯାଏ
ନୀରିହ ଯୌବନ ।୧ ।

ପ୍ଲାଷ୍ଟିକ୍ ଉଦରସ୍ଥ କରିସାରିଥାଏ
ସ୍ୱର୍ଣ୍ଣଗର୍ଭା ପୃଥିବୀକୁ,
ସୂର୍ଯ୍ୟଙ୍କର କ୍ରୋଧାଗ୍ନି ବ୍ୟଥିତ କରୁଥାଏ
ସମଗ୍ର ଜୀବଜଗତକୁ ।୨ ।

ଅଦୃଶ୍ୟ ବାୟୁମଣ୍ଡଳ ଛଟପଟ ହେଉଥାଏ
ବିଷାକ୍ତ କୁହୁଡ଼ିର ମାୟାଜାଲରେ,
ପାଣି ମୁନ୍ଦାଏ ପାଇଁ ପୃଥିବୀ ଓଦା ହୋଇଯାଏ
ନୀରିହର ରକତ ଛିଟାରେ ।୩ ।

ଆଣ୍ଟାର୍କଟିକାର ହିମଖଣ୍ଡ ଶେଷ ନିଶ୍ୱାସ ଛାଡିଥାଏ
ବିଶାଳ ମହାସାଗର ଗର୍ଭରେ,
ରାତିର ଅନ୍ଧାରଟା ଲାଗୁଥାଏ ଆହୁରି ଭୟଙ୍କର
ଅସହ୍ୟ ଥଣ୍ଡାର ପ୍ରକୋପରେ ।୪ ।

ସମଗ୍ର ଜୀବସତ୍ତାର ବିଲୁପ୍ତି ଦୁଃଖରେ ଜର୍ଜରିତ ପୃଥିବୀ
ଚୁପ୍‌ଚାପ୍ ସହୁଥାଏ ହଜାରେ କୋଟି ମଣିଷର ବୋଝ,
ନୂଆ କିଛି ପରିବର୍ତ୍ତନର ଆଶା ନେଇ






ପ୍ରକୃତି ନିଜକୁ କରୁଥାଏ ସଜ ।୫ ।

ଧରିତ୍ରୀର ସବୁଜିମା ହଜିଯାଇଥାଏ
ଅଗନାଅଗନି କଂକ୍ରିଟ୍ ଜଙ୍ଗଲ ମଧ୍ୟରେ,
ନୀରିହ କୋମଳମତି ଶିଶୁଙ୍କର ବୁକୁ ଥରୁଥାଏ
ପରମାଣୁ ଯୁଦ୍ଧର ଅକଳ୍ପନୀୟ ଭୟାବହତାରେ ।୬ ।

ବିଜ୍ଞାନ ଓ ପ୍ରଗତିର ଡିଣ୍ଡିମ ପିଟି
ଦ୍ରୁତ ଗତିରେ ଆଗେଇ ଚାଲିଥିବା ମଣିଷ,
ଏମିତି ଏକ ସୋପାନରେ ପହଞ୍ଚିଥାଏ
ଯେଉଁଠି ଆଗକୁ ଥାଏ ଖାଲି ସର୍ବନାଶ ।୭ ।

ପୃଥିବୀର ନଗ୍ନତା ଲୁଚିଯାଇଥାଏ
ମନୁଷ୍ୟକୃତ ପ୍ଲାଷ୍ଟିକ୍ ବସ୍ତ୍ର ତଳେ,
ମଣିଷ ଖୋଜୁଥାଏ ନିଜ ଆତ୍ମୀୟଙ୍କୁ
ଇଲେକ୍ଟ୍ରୋନିକ୍ ଯନ୍ତ୍ରପାତି ମେଳେ ।୮ ।

ନଭଶ୍ଚୁମ୍ବୀ ଅଟ୍ଟାଳିକାରେ ବସବାସ କରି
ମଣିଷ ଭୁଲିସାରିଥାଏ ଧୂଳିମାଟିଭରା ପୃଥିବୀକୁ,
ଏକବିଂଶ ଶତାବ୍ଦୀର ଶିଶୁ ଭୁଲିଯାଇଥାଏ
ତା ଅତି ଆପଣାର ଜହ୍ନମାମୁଁକୁ ।୯ ।

ପ୍ରକାଣ୍ଡ ଇଲେକ୍ଟ୍ରୋନିକ୍ ସ୍ତୁପ ତଳେ
ହଜିଯାଇଥାଏ ନୀରିହ ପୃଥିବୀର କୋମଳତା,
ସହ୍ୟ କରୁଥାଏ ମଣିଷ ନିଇତି
ବନ୍ୟା ବାତ୍ୟା ଭୂମିକମ୍ପର ଭୟାବହତା ।୧୦ ।






ନାନାଦି ରୋଗର ବାହୁବେଷ୍ଟନୀରେ ଆବଦ୍ଧ ମଣିଷ
ଛାଡୁଥାଏ ତ୍ରାହି ତ୍ରାହି ଚିତ୍କାର,
ଅତି ବାଇଗଣୀ ରଶ୍ମୀ ଧସେଇ ପଶୁଥାଏ
ଛିଦ୍ର କରି ଓଜନ ସ୍ତର ।୧୧ ।

ବାୟୁମଣ୍ଡଳର ଶେଷ ସୀମାରେ
ନିଇତି ପ୍ରାଣହାରେ କୃତିମ ଉପଗ୍ରହଟିଏ,
ଇନ୍ଧନର ଘୋର ଅଭାବ ହେତୁ
ଯାନବାହନର ପ୍ରାୟ ଆବଶ୍ୟକତା ନ ଥାଏ ।୧୨ ।

ଚୋରୀ ଡକାୟତୀ ହତ୍ୟା ଧର୍ଷଣ
ଆଦି ଥାଏ ନିହାତି ସାଧାରଣ ଘଟଣା,
ମଣିଷ ଆଉ ମଣିଷ ହୋଇ ନ ଥାଏ
ହଜେଇ ଦିଏ ମନୁଷ୍ୟ ହେବାର ଠିକଣା ।୧୩ ।

ନିଜ ହାତରେ ନିଜେ ହତ୍ୟା କରି
ନିଜ ଜନ୍ମଦାତ୍ରୀ ପୃଥିବୀକୁ,
ନୂଆ ଏକ ବାସପଯୋଗୀ ଗୃହ ଖୋଜିବାକୁ
ମଣିଷ ଚାଲିଯାଇଥାଏ ଅନେକ ଆଲୋକବର୍ଷ ଦୂରକୁ ।୧୪ ।

ଦୂରଭାଷ : ୯୫୫୬୭୯୭୦୩୯




# ଅସ୍ୱଚ୍ଛ କାନ୍‌ଭାସ୍



କାହ୍ନୁଚରଣ ସାହୁ

ଜୀବନର ସ୍ୱଚ୍ଛ କାନ୍‌ଭାସ୍ ଉପରେ
ଶରତର କାଶତଣ୍ଡୀ ଫୁଲପରି ଭରିଦେଲ
ଧୋବ ଫର୍ ଫର୍ ଖିଲି ଖିଲି ଖୁସିର ପସରା ।
ପାଲା ଗାୟକ ଚାମର ଢାଳିଲା ପରି
ଢାଳିଦେଲ, ଦିବ୍ୟ ଶୀତଳତା ।
ଖୁସି ଆଉ ଶୀତଳତା ଢାଳୁ ଢାଳୁ
କେତେବେଳେ ଯେ ବୁଢ଼ୀ ହୋଇଗଲ
ତମେ ବି ଜାଣିନ ।
ତୁମ ସବାରୀ ଉଠିଲା ଦିନ
ମୁଁ ପହଞ୍ଚିପାରିଲିନି ବୋଲି
ଯେତେ ତୁମ ମାନ ଅଭିମାନ ।
କେମିତିକା ପହଞ୍ଚିଥାନ୍ତି ! ! !
ଗୋଡ଼ରେ ପରା ମୋର
ଦୁଇ ଦୁଇଟି ଶିକୁଳିର ଚିହ୍ନ ।

ଡଲ୍‌ଫିନ୍ ସର୍ଭିସ୍
କେ କେ କମ୍ପ୍ଲେକ୍ସ, ବ୍ରହ୍ମପୁର
ଦୂରଭାଷ : ୯୮୭୧୧୨୩୫୮୭




# ଜନ୍ମ ଓ ମୃତ୍ୟୁ



ଦମୟନ୍ତୀ ଜେନା

ଜନ୍ମ ଓ ମୃତ୍ୟୁର ଅଜବ ଖେଳ ନୀତି
କେତେବେଳେ ଆସେ ଯାଏ ଜଣାପଡ଼େନି କାହାକୁ କିଛି ।
ଜନ୍ମରେ ବିଚ୍ଛୁରିତ ହୁଏ ସୁଖର ଲହରୀ
ଆଉ ମୃତ୍ୟୁରେ ଆଣିଦିଏ ଅସରନ୍ତି ଦୁଃଖ ।
ଜନ୍ମରେ ଆସିଯାଏ ଆଖିରେ ଖୁସିର ଅଶ୍ରୁ
ମୃତ୍ୟୁରେ ବହିଯାଏ ଦୁଃଖର କେତେ ଲୁହ ।
ଜନ୍ମରେ ଲାଗେ ଚତୁର୍ଦ୍ଦିଗ ଆଲୋକିତ ପରି
ମୃତ୍ୟୁ ଲାଗେ ଅନ୍ଧକାରର ସମ୍ବାଦ ।
କହନ୍ତି ସଭିଏଁ ସୁଖ ବାଣ୍ଟିଲେ ହିଁ ବଢ଼େ
କମ ହୁଏ ବାଣ୍ଟିଦେଲେ ଦୁଃଖ ।
କିନ୍ତୁ ସତରେ କଣ କମ ହୁଏ ଦୁଃଖ ?
ଗୋଟିଏ ସଧବାନାରୀର ସିନ୍ଦୁର ଗଲାପରେ
ହାତରୁ ଦି'ପଟ ଶଙ୍ଖା ଗଲାପରେ
ଗଲାପରେ ଗଳାରୁ ହାର ଆଉ ପାଦରୁ ଅଳତାର ଧାର
ରହିଯାଏ ଛାତିରେ ଖାଲି କୋହ,
ବୁକୁଫଟା କାନ୍ଦ ଆଉ ଉଜୁଡ଼ା ସଂସାର ।
ଓଃ କି କଷ୍ଟ
ଓଃ କି ଦୁଃଖ...






# ଆହତ ହୃଦୟ



ପ୍ରଶାନ୍ତ କୁମାର ନାଥ

କେମିତି ଭୁଲିଲ ପ୍ରେମର କାହାଣୀ
ଲେଖିଥିଲେ ଯାହା ଦୁହେଁ,
ମନେ ପଡ଼ିଗଲେ ସେ ପ୍ରେମ କାହାଣୀ
ଆଖି ଲୁହ ଓଠ ପିଏ ।
ଭାବି ମୁଁ ନଥିଲି ଜୀବନରେ କେବେ
ଖାଇବି ଏମିତି ଧୋକା
ଭଲ ପାଇବାଟା ମୋତେ ପିନ୍ଧାଇବା
ଏମିତି କଳଙ୍କ ଟିକା ।
ଭୁଲିଗଲୁ ମୋର ଭଲ ପାଇବାକୁ
ଦେଇ ନାନା ଅପବାଦ
ଭାବିଲୁନି ଥରେ କେମିତି ସହିବି
ହଜିଗଲେ ମୂଲ୍ୟବୋଧ ।
ଭାବି ମୁଁ ନଥିଲି ପ୍ରେମକୁ ମୋହର
ଦେବୁ ଛଳନାର ରୂପ
ଆଜି ମୁଁ ଭାବୁଛି ଜୀବନରେ ମୋର
ପାଇଗଲି ଅଭିଶାପ ।

ସୁନ୍ଦରପୁର, ଉତ୍ତରକୂଳ ହାଟ, ପ୍ରୀତିପୁର, ଯାଜପୁର
ଦୂରଭାଷ : ୮୮୯୨୩୦୧୧୪୩




# ବିରହିଣୀ



ତାରା ପ୍ରସାଦ ଜେନା

ମନକୁ  ଦେଇଛି ତୁମକୁ ବୋଲି
ଜୀଇଁକି ଆଜି ମୁଁ ଭାବୁଛି ମଲି ।
ଆଇନା ଦେଖୁଛି ହଜାରେ ଥର
ଚେହେରା ବିଗିଡ଼ି ଗଲାଣି ମୋର ।
ଗାଲଟା ଶୁଖିକି ମୁହଁଟା କଳା
ଓଠରେ ଚୁମାଟେ ହେଉନି ବୋଳା ।
ଗୁଣ୍ଡାଟେ ପାଟିରେ ପାରୁନି ଚୁଷ୍ଟି
ଭାତ ଯେ ଲାଗୁଛି ଅସଲ ତଣ୍ଟି ।
କାମରେ ରହୁନି ଉଛନ୍ନ ମନ
ଜିନିଷ ଭାଙ୍ଗୁଛି, ଶୁଣୁଛି ତାନ ।
ବାରତା ଦେଉନ ରହୁଚ ବସି
ଭାବୁଚି ଦେହକୁ ଖରାପ ଆସି ।
ଦିଅଁଙ୍କୁ ଡାକୁଛି କରି ମୁଁ ଭୋଗ
ଛଡ଼ାନ୍ତୁ ସକଳ ଦିହର ରୋଗ ।
ପୁରାଣ ପଢୁଛି ରାତିରେ ଟିକେ




ଶାନ୍ତିକୁ ଖୋଜୁଛି ସତରେ ବୁକେ ।

ତୁମରି ଭାବକୁ ପଡ଼ିଛି ଏଠି

ମୁହଁକୁ ବୁଲେଇ ଶୋଉଛି ପିଠି ।

ଅଲରା ବାଳ ସେ ବାନ୍ଧିନି ଭଲା

ପାନିଆ ବାଜିନି ଦି'ଦିନ ହେଲା ।

ସଜକୁ ଯାଉନି ଆଉ ମୋ ହାତ

ଓଠଟା ଗାଉନି ଗୁଣୁରୁ ଗୀତ ।

ପାଠରେ ଆଉ ତ ରହୁନି ଧ୍ୟାନ

ହଜିକି ଯାଇଛି ରଙ୍କୁଣୀ ଧନ ।

ଭିତରୁ ବାହାରୁ ଶୁଣୁଛି ଗାଳି

ନିଠେଇ ସେମିତି ପାରୁଚି ଚଳି ।

ସପନ ଛନକା ଥରୁଛି ଛାଆଁ

ଗହନ ରାତିରେ ଜଳୁଚି ନିଆଁ ।

ଆଖିର ଲୁହକୁ ଲେଡ଼ିରେ ଧରି

ବାୟାଣୀ ପରିକା ହେଉଛି ଘାରି ।

ଆସିବ ସହଳ ପରାଣ ମିତ

ନୋହିଲେ ମରଣ ଘଟିବ ସତ ।




# ଯୁଗେ ଯୁଗେ ଭୁଲ



ଶୁଭମ୍ ନାଏକ

ପୃଥିବୀ ପୃଷ୍ଠରେ ଯୁଗ ଯୁଗ ଧରି
ମାନବ ଆସିଛି ଭୁଲ୍ କରି
ରକ୍ତ ଅସ୍ଥିମାଂସ ମାନବ ଶରୀର
ଫେରିଯାଏ କେବେ ପର କରି ।

ଋଷି ବିଶ୍ୱାମିତ୍ର ଭୁଲ୍ କଲେ ବୋଲି
କାମବାସ୍ନାରେ ଲିପ୍ତ ହୋଇ
ସ୍ୱର୍ଗ ଅପସରୀ ମେନକା ଗର୍ଭ
ଶକୁନ୍ତଳା ଜନ୍ମ ତହିଁ
ସତ୍ୟ ଯୁଗରେ ଭୁଲ୍ ମାର୍ଗରେ ଗଲେ
ବିଶ୍ୱାମିତ୍ର ପଥିକ ହୋଇ ।

ଧର୍ମର ପ୍ରତୀକ ରାଜା ଯୁଧିଷ୍ଠିର
ମାନି ଶକୁନିର ବୋଲ
ଖେଳିଥିଲେ ମିଛ ପଶାକାଠି ଖେଳ
ହୋଇଥିଲେ ସର୍ବହରା
ଦ୍ୱାପର ଯୁଗରେ ଭୁଲ୍ ଥିଲା ଏହି




ମହାଭାରତର ସୃଷ୍ଟି ହେଲା ।

ପ୍ରଜାବତ୍ସଳ ଶ୍ରୀ ରାଜା ରାମଚନ୍ଦ୍ର
ପ୍ରଜାବୋଲ ଶୁଣି ତ୍ୟାଗକଲେ,
ଜନକନନ୍ଦିନୀ ସୀତାଙ୍କୁ ପର
ଭୁଲ୍ କଲେ ନ୍ୟାୟାଧୀଶ
ଭୁଲ୍ କଲେ ସେହି ରାଜା ରଘୁବୀର
ଯୁଗ ତ୍ରେତୟା ଏଥର ।

ଚାଲିଛି ଏଇଠି କଳିକାଳ ଏବେ
କେତେ ଭୁଲର ପ୍ରମାଣ ଦେବି
ଭୁଲ୍ କରିବସେ ବୋଲି ମାନବ
ଏଠି ରହିଛି ମାନବ ହୋଇ ।

ତସଲାଡ଼ିହ, ସୁନ୍ଦରଗଡ଼, ଓଡ଼ିଶା






# ଈଶ୍ୱରଙ୍କ ଛାଇ



ଦୀପକ ଷଡ଼ଙ୍ଗୀ

ମା' ନାରୀ ନୁହେଁ
ମା' ପୁରୁଷ ନୁହେଁ
ମା' ହେଉଛି  ଈଶ୍ୱରଙ୍କ ଏକ ଛାଇ
ସୁଖକୁ ପାସୋରି ଦେଇ ଦୁଃଖକୁ ଆବୋରି ନେଇ
ଦେଇଛି ତୁମକୁ ସମାଜରେ ପ୍ରତିଷ୍ଠା

ଈଶ୍ୱରଙ୍କ ଅନ୍ୱେଷଣରେ ଲାଗିଚ ସଭିଏଁ
ମନ୍ଦିରରେ, ମସଜିଦରେ, ଗୀର୍ଜାରେ
ଯାଅ ନିଜ ଘର ଭିତରକୁ ପାଇବ ନିଶ୍ଚୟ
କୋଉ କୋଣରେ ତମେ ଖୋଜୁଥିବା ଈଶ୍ୱରଙ୍କୁ ।

ଚନ୍ଦ୍ର ପୃଷ୍ଠରେ ଜାଗା କିଣିବାର ପ୍ରୟାସ କରୁଛ ତୁମେ
ଗ୍ରହ ନକ୍ଷତ୍ରଙ୍କୁ ନିଜ ହାତ ମୁଠାରେ ଧରି ରଖିବାକୁ ପ୍ରୟାସ କରୁଛ ତୁମେ
ଆସ ଗୋଟେ ଥର କାହାର ମା' ହୋଇ କରି ଦେଖାଅ
କେହି ନ ଥିଲେ ବି ନିଜ ବୃଦ୍ଧ ମା'ର ମା' ହୋଇ କରି ଦେଖାଅ
ତେବେ ମୁଁ ଜାଣିବି ପ୍ରକୃତରେ ତମେ ମଣିଷ ଏବଂ ଈଶ୍ୱରଙ୍କ ଛାଇ

ଅଧ୍ୟାପକ, ରୋଲାଣ୍ଡ ଫାର୍ମାସୀ କଲେଜ
ଖୋଡାସିଂଗି, ବ୍ରହ୍ମପୁର – ୧୦






# କନ୍ୟା



ସନାତନ ମହାକୁଡ଼

ଦୁହିତା ଜନମ ନେଇ

ଦିକୁଳକୁ ହିତ ହୋଇ

ଜାଣିଛ କି କେବେ ଥରେ ?

କିପରି ଜଳୁଛି ମୋ ଜୀବନ ପ୍ରଦୀପ ?

ଚକିତ କରିଛି ମୋତେ

ସମସ୍ତଙ୍କ ବିସ୍ତାରିତ ନେତ୍ର

ଏକ୍ସୁଡ଼ିର କୁଆଁ କୁଆଁ ଡାକ

ସମାଜରେ ସ୍ଥାନ ମୋର କରିଛି ସ୍ୱତନ୍ତ୍ର

ଶକ୍ତିଦାୟିନୀ ବୋଲି

କନ୍ୟା, ଭଗ୍ନୀ, ପତ୍ନୀ ମାତା ବେଶେ

ଗଢ଼ିବାକୁ ଚଉଦିଗ ଭେଦି ।

ଗ୍ରା/ପୋ : ବେରୁଆଁବାଡ଼ି, ୭୫୨୦୮୨
ନୟାଗଡ଼, ଓଡ଼ିଶା
ଦୂରଭାଷ : ୦୯୩୩୯୬୧୦୧୬୮
ଇମେଲ୍ : sanamahakud@gmail.com
ୱେବ୍‌ସାଇଟ୍ : www.sanmahakud.com






# ବିଭାଜନ



ବରୁଣ କୁମାର ଦାସ

ଆଇନ ସଜେଇ
ମାଟିକୁ କରିଲ ଦିଫାଳ
କଣ୍ଟାତାର ଦେଇ ବାନ୍ଧିଦେଲ
ଭୂଗୋଳର ସୀମା
ହୃଦୟରୁ ଅଲଗା ହେଲା ସ୍ପନ୍ଦନ
ରକ୍ତାକ୍ତ ହେଲା ଦ୍ୱିଖଣ୍ଡିତ ସଂପର୍କ
ଟୁକୁରା ହେଲା ମନ
ଛାତିରୁ ଟାଣି ହେଲା ଟାଣପଣ
ଆଖି ଲୁହରେ କବର ନେଲା ସପନ ।
ପାରିଲେ ବିଭାଜନ କରିଦେଖ
ପବନକୁ, ପକ୍ଷୀକୁ
ଆକାଶକୁ,ଜହ୍ନକୁ
ନଈକୁ, ବର୍ଷାକୁ ।
କେଉଁ ନିୟମରେ ଆକଟ କରିବ
ଏ ସବୁକୁ ?
କେଉଁ ବୁଲେଟ୍ ଦେଖାଇ
ବିଭାଜନ କରିବ ଏ ମାନଙ୍କୁ ?

ପାଲୁସିଆ / ଦେହୁର୍ଦା / ବାଲେଶ୍ୱର
ଇମେଲ୍ - barunkumardas1@gmail.com




# ମୁଁ ତ କହୁଛି



ସୁମିତ୍ରା ରାଉଳ

ସାଗର କହୁଛି ଆ'ରେ ତଟିନୀ
ମିଶି ଯାଆ ମୋ ବୁକୁରେ,
ଧରଣୀ କହୁଛି ଆ'ରେ ଜୀମୂତ
ବରଷି ଯା ମୋ ଉପରେ ।୧ ।
ଦିବସ କହୁଛି ଆ'ରେ ସୁରୂଜ
ଆଲୋକିତ କରି ସଂସାରେ ,
ରଜନୀ କହୁଛି ଆ'ରେ ଚନ୍ଦ୍ରମା
ଶୀତଳତା ଭରି ଅନ୍ଧାରେ ।୨ ।
ନଉକା କହୁଛି ଦକ୍ଷିଣା ପବନ
ଆ ବହି ଧୀରେ ଧୀରେ ,
ତଟିନୀ କହୁଛି ଆ'ରେ ଝରଣା
ବହି ଯା ମୋ ବକ୍ଷରେ ।୩ ।
ଆକାଶ କହୁଛି ଆ'ରେ ବିହଙ୍ଗ
ମୋ ଦେହକୁ ଯା ଛୁଇଁ ,
ପାଦପ କହୁଛି ଆ'ରେ ବାଟୋଇ
ମୋ ଛାଇରେ ଯାଆ ଶୋଇ ।୪ ।
ମାନବ କହୁଛି ଈଶ୍ୱରଙ୍କୁ ସଦା
ଖୁସିରେ ରଖିବା ପାଇଁ ,
ମୁଁ ତ କହୁଛି ପଞ୍ଚଭୂତରେ
ଲୀନ କରିଦିଅ ମୋତେ ସାଇଁ ।୫ ।

ବାଗସାହି, ପ୍ରୀତିପୁର, ଯାଜପୁର
ଦୂରଭାଷ : ୯୯୩୭୮୭୧୨୯୯






# ନିଦର ବୟସ



ନରେଶ କୁମାର ବେହେରା

କାଶ୍ ! ନିଦର ବୟସ ଥାଆନ୍ତା,
ଜୀବନରେ ଥରେ ମାତ୍ର ଆସି
ଯାଆନ୍ତା ଚାଲି...
ଏମିତି ପ୍ରତିଦିନିଆ
କର୍ମରେ ବାଧା
ଶରୀରରେ ଆଳସ୍ୟ
ଲେଖିବାରେ ବିରତି
ନଥା'ନ୍ତା...

କାଶ୍ ! ନିଦର ବୟସ ଥାଆନ୍ତା,
ମୁଁ ତୁମକୁ ପ୍ରତିଟି ମୁହୂର୍ତ୍ତରେ
ସ୍ମରଣରେ, ସ୍ପର୍ଶରେ, ଦୃଶ୍ୟରେ
ମୋର ତୁମକୁ
ଅସୀମ ତୃପ୍ତିରେ
ବାନ୍ଧିଥାନ୍ତି, ତୋଳିଥାନ୍ତି
କଲମରେ ଓ କାଗଜରେ
ହେଉଥିବା ବିରତି
ଶବ୍ଦ ଓ ଲେଖନୀର ସୃଷ୍ଟିରେ
ଉନ୍ମାଦନାରେ, ଚିତ୍ରଣରେ
ବାନ୍ଧୁଥିବା ବନ୍ଧସବୁ
ବାରମ୍ବାର
ଅର୍ଥହୀନ ହୁଅନ୍ତାନି....






କାଶ୍ ! ନିଦର ବୟସ ଥାଆନ୍ତା,
ସୀମିତ ଶେଯ ଥାଆନ୍ତା
ଶେଯର ବି ବୟସ ଥାଆନ୍ତା
ବର୍ଷପରେ ବର୍ଷ ବିତିଗଲେ
ସେ ତାହାର ଠିକଣା ପଚାରନ୍ତା
ସେ କୋମଳ ସ୍ପର୍ଶ ଓ
ସୁଗନ୍ଧ
ମନକୁ ପୁଣିଥରେ
ଆତ୍ମୀୟତାର ଆଭା
ଦର୍ଶାଇଥା'ନ୍ତା...
କାଶ୍ !ନିଦର ବୟସ ଥାଆନ୍ତା,
ଆଉ, ମୁଁ ସାରାଦିନ
ସାରାରାତି, ଏମିତି
ତୁମପାଇଁ ଲେଖୁଥାନ୍ତି
ଏ ସବୁ
ପୂଜିଥାନ୍ତି ତୁମ କାମଦେବଙ୍କୁ
ହଜିଯା'ନ୍ତି ତୁମେ - ମୋ
ଅନିରୁଦ୍ଧ ପ୍ରେମେ...
ବାହୁ ବନ୍ଧନରେ...
ଏଇ 'ସାଗର'ର ଉତ୍ତାଳ ଲହରୀରେ ।

ସମ୍ପାଦକ, ଗଞ୍ଜାମର କବିତାଘର
ମାର୍ଫତ - ବସୁଧା କମ୍ପ୍ୟୁଟର୍, ଗୋଇଲୁଣ୍ଡି ମେନ୍ ରୋଡ଼
ବ୍ରହ୍ମପୁର, ଗଞ୍ଜାମ, ୭୬୦୦୦୪, ଓଡ଼ିଶା
ଦୂରଭାଷ - ୭୮୦୯୮୭୨୪୮୩




# ଇପ୍ସିତ ସ୍ୱର୍ଶ



ସୁବ୍ରତ କୁମାର ସେନାପତି

ତୁମେ ଅଛ, ମୁଁ ଅଛି
ହେଲେ କାହିଁ ଗଲା ତୁମର ସେହି ପ୍ରେମଭରା ସ୍ୱର୍ଶ
ଯେଉଁ ସ୍ୱର୍ଶ ଦିନେ ମୋତେ କରିଥିଲା ମତୁଆଲା
ଭରି ଦେଇଥିଲା ସାତରଂଗ ମୋ ମନ ଆକାଶରେ
ଖେଳି ଯାଇଥିଲା ଅପୂର୍ବ ଶିହରଣ ମୋ ଶିରାପ୍ରଶିରାରେ ।।

ବୟସ ବର୍ଦ୍ଧନୀ ରାତ୍ରିଟା ଲାଗୁଥିଲା ଭାରି ମାୟାବିନୀ
ଆଉ ସେହି ମାୟାବିନୀ ରାତ୍ରିରେ
ତୁମେ ତ ବିଛି ଦେଇଥିଲ ସ୍ୱପ୍ନର ମାୟାଜାଲ
ଯେଉଁ ଜାଲେ ଯାଇଥିଲି ମୁଁ ପଡ଼ି କୁରଙ୍ଗିନୀଟି ପରି ।।

ମୋ ଦେହର ମାନଚିତ୍ର ହେଉଥିଲା ରେଖାଙ୍କିତ
ତୁମରି ସ୍ୱର୍ଶରେ,
କେବେ ବସନ୍ତର ମୃଦୁ ମଳୟରେ ତ
କେବେ ପ୍ରାବୃତ୍ତର ପ୍ରେମଭରା ଶ୍ରାବଣରେ
ପୁଣି ଆଉ କେବେ ଶୀତର ଶୀର୍ଣ୍ଣତାରେ ।।

କିନ୍ତୁ କାଳର କରାଳ ବକ୍ଷରେ
କାହିଁ କେଉଁଠି ଲୀନ ହୋଇଗଲା
ତୁମର ସେହି ସ୍ୱର୍ଶ,
ବଦଳିଗଲା ଆମ ସମ୍ପର୍କର ରୂପରେଖ
ଆଉ ଲିଭିଗଲା ତୁମ ହୃଦୟରୁ
ଆମ ପ୍ରେମ ପ୍ରଣୟର ଶିଳାଲେଖ ।।




ଆଜି ଏ ସ୍ନାୟୁ ବେଳାଭୂମିରେ
ଉଠେ ଖାଲି ଅସଂଖ୍ୟ କାମନାର ଜୁଆର
ଖୋଲିଯାଏ ପୁଣି ଏଠି
ବାସନାର ସେହି ରୁଦ୍ଧ ଦୁଆର
ପ୍ରତିଟି ଅଙ୍ଗ ହୁଏ ଉନ୍ମାଦିତ
ପାଇବାକୁ ତୁମ ଅଧର ପରଶ । ।

ଆସ ଆସ ପ୍ରିୟତମ
ବିଳାସୀ ବସନ୍ତର ମଳୟରେ
ଜରତୀ ଶୀତର ଶୀର୍ଣ୍ଣତାରେ
ଲାସ୍ୟମୟୀ ବର୍ଷାର ରିମ୍ - ଝିମ୍ ସଙ୍ଗୀତରେ
ଆଉ ଭରିଦିଅ ମୋ ଗାତ୍ରେ
ସେ ଅପୂର୍ବ ପୁଲକତା
ତୁମ ଲେଖନୀର ପ୍ରେମଭରା ସ୍ପର୍ଶରେ । ।

କୃଷି ମହାବିଦ୍ୟାଳୟ,
ଭୁବନେଶ୍ୱର ।






# ମାୟା



ଶମ୍ଭୁନାଥ ଦାସ

ଅନେକ କାମନା ମଧ୍ୟେ ସ୍ୱଳ୍ପ ଏ ବୟସ
ଅସରନ୍ତି ଇଚ୍ଛା ଊର୍ମି ନିୟତିର ହସ
ସୁନେଲି ସ୍ୱପ୍ନ ଜୁଆର ଭାବନା ସାଗରେ
ପୁଲକିତ ତନୁ ପ୍ରାଣ ଭବିଷ୍ୟ ବିଭୋରେ
ହେଲେ ନିୟତିର ହସ
ଅଧର୍ମର ଧ୍ୱଂସ ପାଇଁ ଲଗାଇଛି ଫାଶ ।

କାମନା - ବାସନା ମଧ୍ୟେ ମିଥ୍ୟା ପ୍ରତିଶୃତି
ଅଣ୍ଟିଛୁରୀ ତଣ୍ଟିକାଟେ ଆସେ କାଳରାତ୍ରୀ
ଜନ୍ମସାଥେ ମୃତ୍ୟୁ ଥାଏ ଏହା ଚିରନ୍ତନ
କଳ୍ପନା - ଜଳ୍ପନା ସାଥେ କେତେ ଯେ ସପନ
ସ୍ୱପ୍ନ ବିଭୋରେ ଜୀବନ
ମାୟା ମରୀଚିକା ପଛେ ଧାଏଁ ଏହି ମନ ।

ଛବିଳ - ପିଛିଳ ଏହି ରଙ୍ଗୀନ ଦୁନିଆଁ
ବୁକେ ଯା'ର ଭରିଅଛି କାମନାର ନିଆଁ
ଦିକ ଦିକ ଜଳି ଜାଳେ ହୃଦୟ ବନକୁ
ମରୁ ମରୀଚିକା ତୃଷ୍ଣା ଦହଇ ପ୍ରାଣକୁ
ତୃଷ୍ଣା ଆତୁରେ ମାନବ
ହିତାହିତ ଜ୍ଞାନ ଛାଡ଼ି ସାଜେ ସେ ଦାନବ ।

ମୁଖ୍ୟ ସମ୍ପାଦକ, 'ଅଭିଯାନ'
୧୭୫-ଏ/୧, ବିଶ୍ୱଲକ୍ଷ୍ମୀତାଲା ରୋଡ଼
କୋଲକାତା, ୭୦୦୦୬୦ ଦୂରଭାଷ : ୦୯୦୩୮୩୯୭୧୩୫




# ଅସମାହିତ



ଡା ନୀଳମାଧବ କର

ଆମେ ଏଠି ସଂକୁଚିତ ପ୍ରାଣୀସବୁ
ଜାକିଜୁକି ଛିଣ୍ଡା କମ୍ବଳ ଭିତରେ
ଶୀତରାତି ରାସ୍ତାକଡ଼ ନିଆଁପାଖେ
ଜୁଳୁଜୁଳୁ ନିସ୍ତେଜ ନିଷ୍ପ୍ରଭ ଆଖି
ଦିକ୍ ଦିକ୍ କରୁଥିବା ଶେଷ ଅଙ୍ଗାରଟି ପରି
ପେଟଟାରେ ନଅଙ୍କର ଭୋକଦେଇ
ସିଂହପରି ଘାଲେଇ ପଡ଼ିଛୁ
କାଳେ ହରିଣଟେ - ଆମ ଦାନ୍ତ ପାଖେ
ପାଟି ମେଲାକରି ହାଇ ମାରିବ ।
ବଡ଼ପାଟି ଭାଷଣରେ କାନଟା ତାବଡ଼ା
ଦି ଦିନର ବାଛୁରୀପରି ଖୁବ୍ ଅଳସଟେ ଭାଙ୍ଗିହୁଏ
ହେଲେ କିଏ ପଦେ ଫୁସ୍ ଫାସ୍ ଟୁପ୍ ଟାପ୍
ଚାହିଁ ଚାହିଁ ସେପଟେ ଏପଟେ
ବାଲିଯାତ୍ରା ପଡ଼ିଆ ଭିତରେ
ଆମେ ଜାଣିପାରୁ
ଆଖିଗୁଡ଼ା ବଡ଼ ହୋଇଯାଏ
ନିତାନ୍ତ ବୁଝିଲାପରି ଆଖିବୁଜି ମୁଣ୍ଡଟା ହଲେଇବାପରେ




ଜଣାପଡ଼େ ସତେ ଯେପରି

ସେ ଦୁହେଁ ନିଶ୍ଚୟ ପ୍ରେମ କରୁଛନ୍ତି ।

କୁତୁକୁତୁ ଲାଗେ ପରା

କେମିତି କରୁଛନ୍ତି -

ହେଇ କଣ ଫୁସଫାସ୍ କଥା ହେଉଛନ୍ତି ।

ଆଖିଖୋଲି ଦେଖିବାକୁ ଇଚ୍ଛାଟିକେ ହୁଏ

ଅନେଇବାକୁ ଲାଜ ଲାଜ ମାଡ଼େ

ଆମେ ଆଉଟିକେ ଅନ୍ଧାରକୁ ଘୁଞ୍ଚିଯାଉ

ଅନ୍ଧାରରେ ଅନେକ ଭାବିହୁଏ ।

ଭାବି ଭାବି କମ୍ବଳରେ ଫାଟ ଖୋଜୁ

ଯା ଭିତରେ ଦେଖିହେବ ସେମାନଙ୍କୁ

ଯିଏ ଆଲୁଅରେ ପ୍ରେମ କରୁଛନ୍ତି ।

ଫୁସ୍ ଫାସ୍ କଥା ହେଉଛନ୍ତି ।

ହେଲେ ନିଦ ଭାଙ୍ଗିଗଲେ

କାନ୍ଦମାଡ଼େ

ଆଉଥରେ ସେମାନଙ୍କ ହସଖୁସି

ଫୁସ୍ ଫାସ୍ ଚୁପ୍ ଚାପ୍ କଥାବାର୍ତ୍ତା

ଦେଖିବାକୁ ଭାରି ମନ ହୁଏ ।

ମନୋରୋଗ ଚିକିତ୍ସା ବିଶେଷଜ୍ଞ,

ଓଲ୍ଭର୍ହାମ୍ପଟନ୍, ଇଂଲଣ୍ଡ, ବ୍ରିଟେନ୍, ଇମେଲ୍ - nmadhab@yahoo.com






# ଦୂରତା



ଡା ସନ୍ଧ୍ୟାରାଣୀ ପାଣିଗ୍ରାହୀ

ହସି କି କୁହ

ସିଞ୍ଚ ଏ ଲୁହ

ଏ ଭଲ ପାଇବାକୁ

ଏମିତି ଦିଅ ରହିବାକୁ

ସାଇତିବା ପାଇଁ

ସିନ୍ଦୁକରେ

ସିଞ୍ଚନ ପାଇଁ

ଏମନରେ

ସଞ୍ଚିତ ଧନ ଏ

ହୃଦୟରେ

ଜାଗା ଆଉ ନାହିଁ

ଏ ପୁରୁଣା ଡାଏରୀ

ସବୁ ଦେବି ଏଥର

ଓଲଟାଇ

ଏ ଖାଲି କରିବି

ଆଉ ଯେଉଁ ନୂଆ ଲେଖିବି





ଏ ଥାକ ଭର୍ତ୍ତି କରିବି

ସଞ୍ଚିତ ଧନ □□

ତୁମକୁ ଦରକାର ମୋକ୍ଷ

ତୁମେ ଚାହିଁଥିଲ ନିର୍ବାଣ

ତୁମେ ବି କିଛି ଚାହିଁ ରହିଲ

ନିଷ୍କାମ ନା ତୁମେ ଓ ପଥ ନଥିଲ

କାମନାର ଅଗ୍ନି ଭେଦି

କାମନାରହିତ ବି ନୁହଁ

ତୁମ ମହିମା ଓ ଚାହିଁବା

ବାସନାର ଉର୍ଦ୍ଧ ରେ

ମୋ ଚାହିଁବା ସଂକୁଚିତ ଏଠାରେ

କେବଳ କାମନାର ନାମରେ

ଖାଲି ଶବ୍ଦ ସଂଯୋଜନା ପାଇଁ

ମୋ ପାଇଁ ଫାଶୀଦଣ୍ଡ ଦିଅ ରଚି

ବୁଝିବାକୁ ପୁଣି ଥରେ ଫେରି ଆସ

କାମନା ନଥାଇ ଏ ନିର୍ବାଣ ପ୍ରାପ୍ତି ଆଶ

ନିର୍ବାଣ ଓ ମୋର ମୋକ୍ଷ






ମନଟା ଝୁରିହୁଏ ନିରୋଳାରେ

ଗପିବାକୁ ତୁମସହ ଏକାନ୍ତରେ

କେବଳ ନିଜ ମନକଥା

କିଛି ସୁଖ କିଛି ବ୍ୟଥା

ଏତେ ବ୍ୟସ୍ତତା ମଧ୍ୟରେ

ଫୁର୍ସତ ନାହିଁ ଜୀବନରେ

ଏ ଅଜଗର ପରି ଦୂରତା

ମାଡି ବସିଛି ଆମର ଶୂନ୍ୟତା

ଏ ଦୂରତା ହିଁ ଜିତିବ

ଏଠି ହାରିବା ସୁନିଶ୍ଚିତ

ଏ ଉଦ୍ଧତ ଜିଦିଆ ଦୂରତା ପାଖରେ

ହସି ହସି ହାରିବା ଭଲ ପାଇବାରେ

ଦୂରତାର ଦିଗ୍ ବଳୟରେ

ବରିଷ୍ଠା ସ୍ତ୍ରୀ ଓ ପ୍ରସୂତି ରୋଗ ବିଶେଷଜ୍ଞା

ବ୍ରହ୍ମପୁର, ଓଡ଼ିଶା




# ମନ ରାଇଜ



କାଳିଚରଣ ମହାରଣା

ଜୀବନର ପାହାନ୍ତି ସକାଳରେ
ରାବୁଥିଲା କୁଆ, କାଆ... କାଆ...
ମନପକ୍ଷୀ ମନ କୁଆ
ହୃଦୟର ଚାଳ ଛପର ଉପରେ ।
ନିଦୁଆ ସକାଳର ନିଗୁଢ଼ ସପନରେ
ଆଖି ଖୋଲେ ଆଖି ବୁଜେ
ରାବ ତା'ର ଶୁଣି...
ଉଠି ଦେଖେ ହୃଦୟ ଆକାଶେ
ନିଶା ଅମା ପାହି ତ ଗଲାଣି ।
କେରା କେରା ବୁଣିଯାଏ ପଡ଼ି
ସୂର୍ଯ୍ୟର ସେ ଅବିଲିପ୍ତ ରଶ୍ମୀ
ଇଚ୍ଛାରୂପୀ ଅଗଣା ଉପରେ...
ନୂଆ ଏକ ସକାଳର ଅସୁମାରୀ ସ୍ୱପ୍ନ
ଆସି ଦ୍ୱାରେ ଠିଆ ହେଲା
ପ୍ରକମ୍ପିତ ମୋର ତନୁ
ଦେଖି ତା'ର ନବରୂପ




ଆଶ୍ଚର୍ଯ୍ୟିତ ହେଲି କ୍ଷଣେ ।

ପୁଣି ଦେଖେ ହସ ହସ ବଦନେ ତା’

ଥଟ୍ଟା ଆଉ ପରିହାସର

ପ୍ରତିବିମ୍ବ ଦିଶେ ଛଳନାର

ମନକୁ ସାହାସ ବାନ୍ଧି ବଢ଼ାଇଲି ହାତ ଗୋଟି

ଅଭିବାଦନର ସ୍ୱାଗତ ସକାଶେ

କିନ୍ତୁ ଆହା କାହିଁଗଲା ଦୃଶ୍ୟପଟୁ

ନାହିଁ ତ ମୋ ଦୃଶ୍ୟ ଆଢୁଆଳେ

କ୍ଷଣେ ମାତ୍ର ଖୋଜିବୁଲେ ପାଏ ନାହିଁ କିନ୍ତୁ

ବିଚଳିତ ହୃଦୟ ମୋହର

ମନକୁ ପଚାରେ ମୋର ବାରମ୍ବାର ବାରମ୍ବାର

କେଉଁ ରାଇଜରେ ଘର ତୋ’ର ?

କେଉଁ ରାଇଜରେ ଘର ତୋ’ର ?

ଟ୍ରେନିଂ ସ୍କୁଲ, ପୋଲସରା,

ଗଞ୍ଜାମ, ଓଡ଼ିଶା

ଦୂରଭାଷ - ୮୮୯୫୨୩୧୯୪୯




# ଏଇ ନୁହେଁ ବାସ୍ତବତା



ଶିବ କୁମାର ପଣ୍ଡା

ଯେବେ ଝରିଯାଏ ମନ କଲମର କାଳି,
ଆପେ ଆପେ ବାଜିଯାଏ ତୋ ସମ୍ପର୍କର କାହାଳୀ ।
ଯେବେ ବହିଯାଏ ସ୍ମୃତି ନଈ ରୁ ବୁନ୍ଦିଏ ପାଣି ,
ଇଚ୍ଛା ହୁଏ ଶୁଣିବାକୁ ତୋ କାହାଣୀ ।
ଏଇ ନୁହଁ ବାସ୍ତବତା... ଭାଙ୍ଗେ ଦୀର୍ଘ ଦିନର ନୀରବତା ।
ଯେବେ ମନେପଡେ ସେଇ ପ୍ରେମର ଅକୁହା କଥା ,
ଭାବି ଭାବି ବସି ଲେଖେ ତୋ ପାଇଁ କବିତା ।
ଯେବେ ନାଚି ଉଠେ ମନ ସାଗରରେ ଢେଉ ,
ମୁହୂର୍ତ୍ତକ ପାଇଁ ଜାଣି ପାରେନା ଭାବି କ'ଣ କରିବି ଆଉ ।
ଏଇ ନୁହଁ ବାସ୍ତବତା... ମନ ରାଇଜର ସୃଜନଶୀଳତା ।
ଯେବେ ଶୁଣେ ଶୂନ୍ୟତାରେ ତୋରି କୁହୁତାନ ,
ଖୋଜେ ତତେ ଶବଦର ଛାନ୍ଦେ ଦେଇ ମନ ।
ଯେବେ ସରିଯାଏ ମନ କଲମର କାଳି,
ଚାହିଁଲେ ବି ପଦେ ଲେଖି ପାରେନା ତୋ ଜୀବନଶୈଳୀ ।
ଏଇ ନୁହଁ ବାସ୍ତବତା... ଏଇ ଯେ ମୋ ମନର ଦୁର୍ବଳତା ।

ସହକାରୀ ଅଧ୍ୟାପକ
ସେଞ୍ଚୁରିଆନ ବୈଷୟିକ ବିଶ୍ୱବିଦ୍ୟାଳୟ
ଜଟଣୀ, ଭୁବନେଶ୍ୱର ,ଓଡିଶା
ଦୂରଭାଷ: ୯୪୩୮୧୦୧୦୯୦
ଇମେଲ୍ : panda.sibakumar08@gmail.com
ୱେବସାଇଟ୍ : sibakumarpanda.blogspot.in






# ଫଗୁଣ ଆସେ ଗାଁରେ



ବି. ପ୍ରକାଶ ଚନ୍ଦ୍ର ପାତ୍ର

ଫଗୁଣ ଆସେ ଆମ ଗାଁରେ...

ଖୁବ୍ ଉଦ୍ଦାମତାରେ

କୋଇଲିର କୁହୁତାନରେ

ଝରଣାର କୁଳୁ କୁଳୁ ନାଦରେ

ସମୀରର ସିଁ ସିଁ ଶବ୍ଦରେ

ଫଗୁଣ ଆସେ ଅତି ସନ୍ତର୍ପଣରେ ଆମ ଗାଁରେ !୧

ଫଗୁଣ ଆସେ ! ଫଗୁରେ, ହୋଲିରେ

କିଚିରି ମିଚିରି ଶବ୍ଦରେ

ଝିଙ୍କାରିର ନିର୍ଜନତାରେ

ବୟସର ଅପରାହ୍ନ ଗୋଧୂଳି ଧୁଆଁରେ

ଫଗୁଣ ଆସେ ଆମ ଗାଁରେ !୨

ଆମ ଗାଁ ମଶାଣି ପଠାରେ କୃଷ୍ଣଚୁଡ଼ା

ସଜାଇ ହୁଏ ପ୍ରଜାପତି ପାଇଁ

ଧୈର୍ଯ୍ୟଚ୍ୟୁତ ବଉଳରୁ






ଅହରହ ମଧୁ ସ୍ଖଳିତ ହୁଏ

ପୂର୍ଣ୍ଣତା ବିକଶିତ ହୁଏ ପଳାଶ ଫୁଲରେ

ଫଗୁଣ ଆସେ ଆମ ଗାଁରେ !୩

ହଳଦିଆ ଶାଢ଼ୀ ପିନ୍ଧି

ହଳଦୀ ବସନ୍ତ ଆସେ

ମଲ୍ଲିଫୁଲ ଗଜରାରେ ସଜେଇ ହୋଇ,

ଦକ୍ଷିଣା ପବନ ବାଜି

ଉତ୍ତେଜିତ କାଶତଣ୍ଡି ଝଡ଼ିପଡ଼େ

ନଈକୂଳ ବାଲିର ପଠାରେ

ଫଗୁଣ ଆସେ ଆମ ଗାଁରେ !୪

ବିହଙ୍ଗର ନିଃସଙ୍ଗ ସଙ୍ଗୀତ

ଭାସି ଆସେ ତୋଟା ଗହଳରୁ

ସୋରିଷ ଫୁଲର କାନ୍ତି ଚମକାଇ

ସଞ୍ଜ ଓଢ଼ଣୀର ଫିକା ଅନ୍ଧାରରେ

ଫଗୁଣ ଆସିଲେ ଆମ ଗାଁରେ !୫

ଆମ ଗାଁ ଯାନି ଯାତ ଖଳାମେଳା ସରେ






ସଭିଏଁ ରଙ୍ଗେଇ ଯା'ନ୍ତି ପରିଧିର ବଗିଚା ଭିତରେ

ବେଳ ଦେଖି ପୁନେଇଁର ଅଭିସାର ହୁଏ

ମତୁଆଲା ପ୍ରେମ ଉଜାଣିରେ

ଫଗୁଣ ଆସିଲେ ଆମ ଗାଁରେ !୬

ଏବେଳର ଭଅଁର ମାନଙ୍କ ମସଗୁଲରେ

କବିତା ପ୍ରସବିନୀ ହୁଏ

ଶବ୍ଦମାନେ ନିଆରା ନିଆରା ଲାଗନ୍ତି

କବି କଲମରେ

ଫଗୁଣ ଆସିଲେ ଆମ ଗାଁରେ !୭

ଅଧ୍ୟକ୍ଷ

ଆଞ୍ଚଳିକ ବିଜ୍ଞାନ ମହାବିଦ୍ୟାଳୟ

ବାଲିପଦର, ଗଞ୍ଜାମ




# ପୁସ୍ତକ ସମୀକ୍ଷା



ଶ୍ରୀମତି ତାନଶ୍ରୀ ମହାପାତ୍ର

ପୁସ୍ତକ - ଉପଶମ ଚିକିତ୍ସା

ରଚନା - ଡା ଲିପିକା ପାତ୍ର, ଡା ସୌମ୍ୟ ରଞ୍ଜନ ମିଶ୍ର

ସମୀକ୍ଷା - ଶ୍ରୀମତି ତାନଶ୍ରୀ ମହାପାତ୍ର

ପ୍ରକାଶକ -

ସ୍ୱର୍ଣ୍ଣଶ୍ରୀ

ମଧ୍ୟଖଣ୍ଡୀ, ଶ୍ରୀ ବଳଦେବଜୀଉ

କେନ୍ଦ୍ରାପଡ଼ା, ୭୫୪୨୧୨, ଓଡ଼ିଶା

ମୂଲ୍ୟ - ୭୦ ଟଙ୍କା

ପୃଷ୍ଠା - ୭୨+୪




ମନୁଷ୍ୟର ଜନ୍ମ ଅନ୍ୟମାନଙ୍କୁ ଯେତିକି ଆନନ୍ଦ ଦେଇଥାଏ, ମୃତ୍ୟୁ ତତୋଃଧିକ ଦୁଃଖ ଦେଇଥାଏ । ଭେଷଜ ବିଜ୍ଞାନର ଅଗ୍ରଗତି ଫଳରେ ଅନେକ ଦୁଃସାଧ୍ୟ ରୋଗର ସଫଳ ଚିକିତ୍ସା କରାଯାଇପାରୁଥିଲେ ସୁଦ୍ଧା ପ୍ରତିବର୍ଷ କିଛି ବ୍ୟକ୍ତି କର୍କଟ ପରି




ମାରାତ୍ମକ ରୋଗର ଶୀକାର ହୋଇ ଅନେକ କଷ୍ଟ ପାଇ ମୃତ୍ୟୁବରଣ କରିଥାନ୍ତି । ଶିଶୁମାନେ ମଧ୍ୟ ଏଥିରୁ ବାଦ ପଡ଼ନ୍ତି ନାହିଁ । ମୃତ୍ୟୁ ଅନିବାର୍ଯ୍ୟ । ରୋଗରେ ସଢ଼ି, କଷ୍ଟପାଇ, ଦୁଶ୍ଚିନ୍ତାରେ ମୃତ୍ୟୁବରଣ କରିବା ଅପେକ୍ଷା ଶାନ୍ତି ଓ ସମ୍ମାନର ସହିତ ମୃତ୍ୟୁବରଣ କରିବାକୁ ସମସ୍ତେ ଚାହାନ୍ତି । କିନ୍ତୁ ସମସ୍ତଙ୍କୁ ଏହା ଉପଲବ୍ଧ ହୋଇନଥାଏ । 'ଉପଶମ ଚିକିତ୍ସା' ପୁସ୍ତକରେ ଦୁରାରୋଗ୍ୟ ବ୍ୟଧି ଭୋଗୁଥିବା ଆତ୍ମୀୟସ୍ୱଜନଙ୍କର କିପରି ସହଜରେ ସେବା ଶୁଶ୍ରୁଷା କରାଯାଇପାରିବ, ସେ ବିଷୟରେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରାଯାଇଛି । ଜୀବନର ବହୁ ମୂଲ୍ୟବାନ ଅନୁଭୂତି ଓ ଅଭିଜ୍ଞତାକୁ ପାଥେୟ କରି ଡା ଲିପିକା ପାତ୍ର ଏବଂ ଡା ସୌମ୍ୟରଞ୍ଜନ ମିଶ୍ରଙ୍କ କଲମମୂନରୁ ଝରି ପଡ଼ିଛି ସମସ୍ତଙ୍କ ପାଇଁ ବହୁ ଉପାଦେୟ ଏହି ପୁସ୍ତକ । ଚିକିତ୍ସା ଶାସ୍ତ୍ରରେ ବ୍ୟବହୃତ କ୍ଲିଷ୍ଟ ଶବ୍ଦ ସମୁହର ସାଧାରଣ ପରିଭାଷାର ପ୍ରୟୋଗରେ ପୁସ୍ତକଟି ସାବଲୀଳ ଓ ବୋଧଗମ୍ୟ ହୋଇଛି ।


ଡା ଲିପିକା ପାତ୍ର


ଡା ସୌମ୍ୟରଞ୍ଜନ ମିଶ୍ର

ପୁସ୍ତକଟିରେ ରୋଗୀ ଓ ରୋଗୀଙ୍କ ପରିବାର ସ୍ୱଜନ ଏବଂ ସେବା ପ୍ରଦାନକାରୀଙ୍କ ମଧ୍ୟରେ ବାର୍ତ୍ତାଳାପକୁ ଗୁରୁତ୍ୱ ଦିଆଯାଇଛି । ରୋଗୀର ଶାରୀରିକ ଏବଂ ମାନସିକ ସ୍ଥିତିକୁ ଗୁରୁତ୍ୱ ଦେଇ ପରଖିବା, ଧ୍ୟାନ ଦେଇ ରୋଗୀଙ୍କ କଥା ଶୁଣିବା ଏବଂ ରୋଗୀକୁ ତାଙ୍କର ଭୟ ଓ ଉଦ୍‌ବେଗ ବିଷୟରେ ଖୋଲିକରି କହିବାପାଇଁ ସୁଯୋଗ ଦେବା ଏବଂ ସାହାଯ୍ୟ କରିବା ଦ୍ୱାରା






ରୋଗ ବିଷୟରେ ସଠିକ୍ ତଥ୍ୟ ମିଳିଥାଏ । ଏହାଦ୍ୱାରା ଚିକିତ୍ସା କରିବା ଏବଂ ପୀଡ଼ା ନିୟନ୍ତ୍ରଣ କରିବା ସହଜ ହୋଇଥାଏ । ବିଭିନ୍ନ ରୋଗ ଓ ଶାରୀରିକ ସମସ୍ୟାର ବିବରଣୀ, ଲକ୍ଷଣର ରୂପରେଖ ଏବଂ କିପରି ସେଗୁଡ଼ିକର ସମାଧାନ କରାଯାଇପାରିବ ତାହା ପୁସ୍ତକଟିରେ ଅନ୍ତର୍ଭୁକ୍ତ ହୋଇଛି । ଚିକିତ୍ସା ଏବଂ ସେବା ପ୍ରଦାନ ସମୟରେ ରୋଗୀକୁ ଯେପରି କୌଣସି କ୍ଷତି ନ ପହଞ୍ଚେ ସେଥିପ୍ରତି ସେବାପ୍ରଦାନକାରୀ ସବୁବେଳେ ଚେଷ୍ଟିତ ରହିବା ଆବଶ୍ୟକ - ଏହାକୁ ମଧ୍ୟ ଉକ୍ତ ପୁସ୍ତକରେ ଗୁରୁତ୍ୱ ଦିଆଯାଇଛି ।

ଆଶା କରୁଛି ଏହି ପୁସ୍ତକର ଆଦର ନିଶ୍ଚୟ ବଢ଼ିବ । ପୁସ୍ତକଟି ପରିବାର ସ୍ୱଜନଙ୍କ ସମସ୍ତ ଜିଜ୍ଞାସାକୁ ପ୍ରଶମିତ କରିବା ସହିତ ଚିକିତ୍ସକ ଓ ସେବା ପ୍ରଦାନକାରୀଙ୍କୁ ଚିକିତ୍ସା କ୍ଷେତ୍ରରେ ଏକ ନୂତନ ମାଗଦର୍ଶନ କରାଇବ । ଜଗତରନାଥ ଜଗନ୍ନାଥଙ୍କ ଠାରେ ଲେଖକ ଦୁହିଁଙ୍କର ନିରାମୟ ଜୀବନ କାମନା କରୁଛି । ସେମାନେ ଚିକିତ୍ସା ଓ ସେବା କ୍ଷେତ୍ରରେ ଏମିତି ଉପାଦେୟ ପୁସ୍ତକ ଲେଖିବାରେ ବ୍ରତୀ ହୁଅନ୍ତୁ ।

ଆଚାର୍ଯ୍ୟା, ସରସ୍ୱତୀ ଶିଶୁ ବିଦ୍ୟାମନ୍ଦିର

ବାଲିଆ, ବାଲେଶ୍ୱର

ଦୂରଭାଷ : ୯୪୩୭୩୫୦୬୬୪




# ପୁସ୍ତକ ସମୀକ୍ଷା



ଲିଲି ଗୌଡ଼

ପୁସ୍ତକ - ଯୋଗକଥା

ରଚନା - ସନାତନ ମହାକୁଡ଼

ସମୀକ୍ଷା - ଲିଲି ଗୌଡ଼

ପ୍ରକାଶକ - ଟାଇଗର କ୍ଲବ୍, ବେରୁଆଁବାଡ଼ି

ନୟାଗଡ଼, ଓଡ଼ିଶା, ୭୫୨୦୮୨

ମୂଲ୍ୟ - ୨୦ ଟଙ୍କା

ପୃଷ୍ଠା - ୪୮+୪ ISBN : 978-93-5104-607-3

ସାହିତ୍ୟିକ ତଥା ବିଶିଷ୍ଟ ଯୋଗ ଶିକ୍ଷକ ଶ୍ରୀ ସନାତନ ମହାକୁଡ଼ଙ୍କ ରଚିତ ବିଭିନ୍ନ ପୁସ୍ତକ ମଧ୍ୟରୁ 'ଯୋଗ କଥା' ଗୋଟିଏ ଉପାଦେୟ ପୁସ୍ତକ । ଜୁନ୍ ମାସର ୨୧ ତାରିଖକୁ 'ଆନ୍ତର୍ଜାତୀୟ ବିଶ୍ୱ ଯୋଗ ଦିବସ' ଭାବରେ ପାଳନ କରୁଥିବା ସମୟରେ ଏକ ଯୋଗ ସମ୍ବନ୍ଧୀୟ ପୁସ୍ତକର ସମୀକ୍ଷା ପ୍ରକାଶନ ସମୟର ଆହ୍ୱାନ ।

କଳେବର ଦୃଷ୍ଟିରୁ 'ଯୋଗ କଥା' ପୁସ୍ତିକାଟି ଖୁବ୍ କ୍ଷୁଦ୍ର ମନେ ହେଲେ ହେଁ, ଏଥିରେ ପ୍ରଦତ୍ତ ଆଠଟି ଲେଖା ଅଳ୍ପରେ ଅନେକ କଥା କହିଲା ଭଳି ମନେ ହୁଏ । ଲେଖା ଗୁଡ଼ିକ ଲେଖକଙ୍କ ନିଜସ୍ୱ ଅନୁଭୂତି ଓ ଉପନିଷଦ ପ୍ରଦତ୍ତ 'ପଞ୍ଚକୋଷ' ଯଥା - ଅନ୍ନମୟ, ପ୍ରାଣମୟ, ମନୋମୟ, ବିଜ୍ଞାନମୟ ଓ ଆନନ୍ଦମୟ ଆଦି ସ୍ତରରେ ହେଉଥିବା ପରିବର୍ତ୍ତନ ସମ୍ପର୍କରେ ଅତି ସରଳ ଓ ସାବଲୀଳ ଭାଷାରେ ଉପସ୍ଥାପନା କରାଯାଇଛି । ପ୍ରଦତ୍ତ ଆଠଟି ପ୍ରବନ୍ଧକୁ ସଂକ୍ଷିପ୍ତରେ ନିମ୍ନମତେ ପ୍ରକାଶ କରାଯାଇ ପାରେ -




ଜଣେ ସାଧାରଣ ମନୁଷ୍ୟ ପ୍ରତ୍ୟେକ କ୍ଷେତ୍ରରେ ଜାଗ୍ରତ ରହିଲେ ଅନେକ ଅଦୃଶ୍ୟ ଅସୁବିଧା ଓ ସମସ୍ୟାରୁ ଆପେ ଆପେ ମୁକ୍ତି ପାଇପାରିବ । ଟିକିଏ ମାତ୍ର ସାବଧାନତା ଅନେକ ପ୍ରକାର ସଫଳତାର ଚାବିକାଠି ।




ଆହ୍ୱାନର ଆଗାମୀ ସଂସ୍କରଣ ଜୁଲାଇ ମାସରେ ପ୍ରକାଶିତ ହେବ । ନିଜ ଦ୍ୱାରା ଲିଖିତ କବିତା ଓ କାହାଣୀ ଶୀଘ୍ର ଆମ ନିକଟକୁ ପଠାନ୍ତୁ ।

ଆପଣଙ୍କ ଲିଖିତ କବିତା, କାହାଣୀ, ଭ୍ରମଣ କାହାଣୀ, ଶିଶୁକଥା, ଜୀବନ କଥା, ଇତିହାସ, ରୋଷେଇ, ଘରକରଣା, ସ୍ୱାସ୍ଥ୍ୟ, ବ୍ୟଙ୍ଗ ଇତ୍ୟାଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ପଠାଇ ପାରିବେ ।

ଆମ ଇ-ମେଲ୍ ଠିକଣା :

**aahwaan@gmail.com**

ଚିଠି ମାଧ୍ୟମରେ ଲେଖା ପ୍ରେରଣ କରିବା ଠିକଣା

**ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ**

ସମ୍ପାଦକ, 'ଆହ୍ୱାନ ଇ-ପତ୍ରିକା'

ବୀମାନଗର, ୨ୟ ଗଳି, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା

ଫୋନ : ୯୦୪୦୯୮୫୪୬୩ / ୭୦୦୮୫୭୬୦୮୫

# ବିଶେଷ ସୂଚନା

ଆହ୍ୱାନ ଇ-ପତ୍ରିକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହିତ୍ୟ ଇ-ପତ୍ରିକା । ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ । ବେଳେ ବେଳେ ପୂଜା ପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବିଶେଷ ସଂସ୍କରଣମାନ ମଧ୍ୟ ପ୍ରକାଶିତ ହୁଏ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦି ଏଥିରେ ପ୍ରକାଶିତ ହୁଏ ।

ଏହି ପତ୍ରିକାରେ ଲେଖା ପ୍ରକାଶିତ କରିବା ପାଇଁ ନୂଆ ଓ ପୁରୁଣା ଉଭୟ ସାହିତ୍ୟକାରଙ୍କୁ ପ୍ରୋତ୍ସାହନ ଦିଆଯାଇଥାଏ । ଯେହେତୁ ଏହି ପତ୍ରିକା ନିଃଶୁଳ୍କ ବିତରଣ ନିମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ, ଲେଖିକାମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦିଆଯାଏ ନାହିଁ । ପାରିଶ୍ରମିକ ଆଶା କରୁଥିବା ଲେଖକ ଲେଖିକାମାନେ ନିଜ ଲେଖା ବ୍ୟବସାୟିକ ପତ୍ରପତ୍ରିକାକୁ ପଠାଇ ପାରିବେ ।

ଏହି ପତ୍ରିକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନିଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ । ପାଠକ ଚାହିଁଲେ ଏହି ପତ୍ରିକାର ଗୋଟିଏ ପ୍ରତିଲିପି ନିଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କରି ପାରିବେ ।

ଲେଖକ ଲେଖିକାମାନେ ନିଜ କୃତି ଆମ ନିକଟକୁ ଡ଼ାକଦ୍ୱାରା କିମ୍ବା ଇ-ମେଲ୍ ଦ୍ୱାରା ପଠାଇ ପାରିବେ । ଡ଼ାକ ଦ୍ୱାରା ପଠାଉଥିଲେ ନିଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନିର୍ଭୁଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କିମ୍ବା ଟାଇପ୍ କରି ମଧ୍ୟ ପଠାନ୍ତୁ । ଇ-ମେଲ୍ ଦ୍ୱାରା ପଠାଉଥିଲେ ଲେଖାକୁ ଲେଖି ସାରିବ ପରେ ସ୍କାନିଂ କରି ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।

ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରିବେଶ ଅନୁକୂଳ, କାରଣ ଏହାଦ୍ୱାରା କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ । ଆମେ ପରିବେଶ ପ୍ରଦୁଷଣ ବିରୋଧ କରୁ ।

ଆହ୍ୱାନ ଇ-ପତ୍ରିକାରେ ଲେଖା ପ୍ରକାଶିତ କରିବାପାଇଁ ଯଦି ଆପଣ ଇଚ୍ଛୁକ ତେବେ ନିଜ






ଲିଖିତ କୃତିକୁ ଆପଣ ଆମ ନିକଟକୁ ପଠାନ୍ତୁ । ଯେହେତୁ ଏହି ପତ୍ରିକା ଇଣ୍ଟରନେଟରେ ପ୍ରକାଶିତ ହୁଏ ଏବଂ ପ୍ରତ୍ୟେକ ମାସରେ ଶହସ୍ରାଧିକ ଓଡ଼ିଆଙ୍କ କମ୍ପ୍ୟୁଟରରେ ଶୋଭାପାଏ ତେଣୁ ଏହି ପତ୍ରିକାପାଇଁ ଲେଖା ମଧ୍ୟ ଇଣ୍ଟର୍‌ନେଟ ମାଧ୍ୟମରେ ହିଁ ଗ୍ରହଣ କରାଯାଏ । ଯଦି ଆପଣ ଇ-ମେଲ୍ ଦ୍ୱାରା ଆମ ନିକଟକୁ ଲେଖା ପଠାଇ ପାରିବେ ନାହିଁ, ତେବେ ଆପଣ ନିଜ ଲେଖା ଧଳା କାଗଜରେ ଗୋଟିଏ ପାର୍ଶ୍ୱରେ ନିର୍ମଳ ହସ୍ତାକ୍ଷରରେ ଲେଖି ଆମ ନିକଟକୁ ନିମ୍ନ ଠିକଣାରେ ପଠାଇ ପାରିବେ ।

ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ବୀମା ନଗର - ୨ୟ ଗଳି

ଆମ୍ବପୁଆ, ବ୍ରହ୍ମପୁର - ୭୬୦୦୧୦

ଓଡ଼ିଶା, ଫୋନ୍: ୯୦୪୦୯୮୫୪୬୩ / ୯୮୬୧୯୬୨୧୬୦

ଯଦି ଆପଣ ଇଣ୍ଟର୍‌ନେଟ୍ ମାଧ୍ୟମରେ ଲେଖା ପଠାଇବାକୁ ଚାହାନ୍ତି ତେବେ ନିଜ ଲେଖାକୁ ଟାଇପ୍ (ଓଡ଼ିଆ ୟୁନିକୋଡ଼ ଫଣ୍ଟରେ ଟାଇପ୍ କରିବେ ଯଥା ଅପ୍ରାନ୍ତ ଓଡ଼ିଆ / ଗୁଗୁଲ୍ ଓଡ଼ିଆ ଟ୍ରାନ୍‌ସ୍‌ଲିଟେରେସନ୍) କରି Microsoft Word Document ରେ ଆମ ନିକଟକୁ ପଠାନ୍ତୁ, କିମ୍ବା ଲେଖାକୁ ସ୍କାନ୍ କରି ଜେପିଇଜି ଫର୍ମାଟରେ ଇମେଲ୍ Attachment କରି ପଠାନ୍ତୁ । ଆମ ଇ-ମେଲ୍ ଠିକଣା ହେଲା - aahwaan@gmail.com

ଏହି ପତ୍ରିକା ଉନ୍ନତି ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।

ଧନ୍ୟବାଦ

**ଡା ଜ୍ୟୋତି ପ୍ରସାଦ ପଟ୍ଟନାୟକ**

ପ୍ରତିଷ୍ଠାତା-ସମ୍ପାଦକ, 'ଆହ୍ୱାନ'

# ଜୟ ଓଡ଼ିଆ । ଜୟ ଓଡ଼ିଶା । ଜୟ ଜଗନ୍ନାଥ

ଯଦି ଏହି ସଂସ୍କରଣରେ କୌଣସି ତ୍ରୁଟିଥାଏ, ସେଥିପାଇଁ ସମ୍ପାଦକ କ୍ଷମାପ୍ରାର୍ଥୀ ।




Alternatively, You can also click on this link on your android mobile phone with WhatsApp to join our group.

https://chat.whatsapp.com/BPW1qPbKJWp7H4M3zhzAiE




ଆହ୍ୱାନ ଇପତ୍ରିକା ଏବଂ ଆହ୍ୱାନ ଓଡ଼ିଆ ପରିବାରର ହ୍ୱାଟ୍‌ସଆପ୍ ଗ୍ରୁପର ସଦସ୍ୟ ହେବାପାଇଁ ଆମ ହ୍ୱାଟ୍‌ସଆପ୍ ନମ୍ବରକୁ ନିଜ ମୋବାଇଲରେ ସ୍ଥାପିତ (Save) କରନ୍ତୁ । ଏବଂ ଆମକୁ ସନ୍ଦେଶ (Message) ଦିଅନ୍ତୁ ।

ଆମ ହ୍ୱାଟ୍‌ସଆପ୍ ଗ୍ରୁପ୍‌ର ନମ୍ବର ହେଉଛି :

# 9040985463